# ସମଗ୍ର କବିତା

## (୧)

ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର



# ସମଗ୍ର କବିତା (୧)
Samagra Kabita (1)

ଲେଖିକା : ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର
Writer : Dr. Manorama Biswal Mohapatra



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ କଟକ - ୭୫୩୦୦୨
Publisher : Sahadev Pradhan
*Friends' Publishers*, Binodbehari
Cuttack-753 002, Odisha (India)

ପ୍ରଥମ ସଂସ୍କରଣ : ୨୦୧୪
First Edition : 2014

ପ୍ରଚ୍ଛଦ : ବିଭୁ ପ୍ରସୂନ
Artist : Bibhu Prasunna

ଅକ୍ଷରସଜ୍ଜା : ଓମ୍ ଡିଟିପି ସେଣ୍ଟର, କଟକ
Typeset : Omm DTP Centre, Cuttack

ମୁଦ୍ରଣ : ଦି ଲକ୍ଷ୍ମୀ ପ୍ରେସ୍, କଟକ
Printer : The Lakshmi Press, Cuttack

ISBN 81-7401-789-5

Price : ₹ **225**

# କବିତା ଲେଖାର ଅମୃତ ଲଗ୍ନରେ

ସେ ସବୁଦିନ ଅନେକ ପଛରେ ରହିଗଲାଣି କବିତା ଲେଖାର ପ୍ରଥମ ଦିନ । "ସରୁ ଦାଣ୍ଡ କଡ଼େ ଗଜଘର ଖଣ୍ଡି"ରେ ଖଡ଼ି ଛୁଆଁର ପ୍ରଥମ ଅନୁଭବ । ଦୂରଗାଁ । ଡେଙ୍ଗା ତାଳଗଛ । ଅଣିଣ ଭୋର୍ । କୁମ୍ଭାଟୁଆ ଡାହୁକର ଡାକ । କଇଁ ଭର୍ତ୍ତି ପୋଖରୀ । ଶେଷରେ "କହଇ ମନ ଆରେ ମୋ ବୋଲ କର" କିମ୍ବା "ଆରେ ବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ" ଆଦି ଗୀତର ସ୍ୱର, ସବୁ ମୋର ମନେପଡୁଛି । ସେଥିପାଇଁ ବାରମ୍ବାର ଇଚ୍ଛା ହୁଏ ଆଉଥରେ ଜନ୍ମ ହେବି କବି ହୋଇ ଆସନ୍ତା ଜନ୍ମରେ ଏଇ ଗାଁରେ । କବିତା ଲେଖାର ଅମୃତ ଲଗ୍ନକୁ ମୁଁ କେମିତି ଭୁଲିବି ।

ଆଜି ମୋର **ସମଗ୍ର କବିତା**ର ପ୍ରଥମ ଭାଗରେ ପାଞ୍ଚୋଟି କବିତା ସଂକଳନ ସ୍ଥାନିତ ହୋଇଛି । ଥରେ ଖାଲି ଡାକିଦେଲେ (୧୯୯୨), ଶବ୍ଦର ପ୍ରତିମା (୧୯୯୪), ଫାଲ୍‌ଗୁନି ତିଥିର ଝିଅ (୧୯୯୮), ଭାବୁଛି ଚିଠି ଲେଖିବି ମାଆକୁ (୨୦୦୫) ଏବଂ ଏବେ ଖାଲି ଚିତ୍ର ଆଉ ଚିତ୍ର (୨୦୧୦) ।

ଆଜି ଏହି **ସମଗ୍ର** କବିତାର ପ୍ରକାଶ ଅବକାଶରେ ବଦଳି ଯାଉଥିବା ଅନେକ ଘଟଣା, ଯାହା ସେତେବେଳେ ମୋ କବି ମନରେ ଆଲୋଡ଼ନ ଆଣିଥିଲା । ମାଆ ମୋତେ କବି ଆଖି ଦିନେ ଦେଇଥିଲା । ବାପା ଦେଇଥିଲେ ପିଲାଦିନ ।

ମୋର ବିଶ୍ୱାସ ପ୍ରତ୍ୟେକ ମାଆ ଭିତରେ ରହିଛି ଈଶ୍ୱରୀଟିଏ । କୂଅମୂଳର ପୋଦିନା ପତ୍ରକୁ ଛୁଇଁ ଯାଉଥିବା ପବନ ଦେହରେ ବି ଜୀବନ ଥାଏ । ମାଆ ଏବଂ ଝିଅର ଅନାବିଳ ସଂପର୍କ ଭିତରେ କେତେ ପତିଆରା, କେତେ ଲୋଡ଼ିବା ପଣ । ସବୁକୁ ମୁଁ ସାଇତି ରଖିଛି ସେ ସବୁ କବିତାମାନଙ୍କରେ ।

ଚିତ୍ରର କାରୁକାର୍ଯ୍ୟ ଭିତରେ କେତେ ସଢ଼ଡ଼ା ମନର ଉଚ୍ଚାରଣ । ଆଜି ଏଇ **ସମଗ୍ର କବିତା** ପ୍ରକାଶ ମୁହୂର୍ତ୍ତରେ ସେହି ସବୁ ମୁହୂର୍ତ୍ତମାନଙ୍କୁ ସ୍ମରଣ କରୁଛି ।

ମନୋରମା ବିଶ୍ୱାଳ ମହାପାତ୍ର

# ସୂଚୀପତ୍ର

**ଏବେ ଖାଲି ଚିତ୍ର ଆଉ ଚିତ୍ର** [୨୨୦-୩୦୨]

## ତୁ ଆସିବୁ ବୋଲି

ଆଜି ଏଇ ସକାଳଟା
କେମିତି ଖୋଲିଯାଉଛି
ମୋ ସାମ୍ନାରେ ପରସ୍ତ ପରସ୍ତ
କିଚିରି ମିଚିରି ଶବ୍ଦରେ
ଭରିଗଲାଣି ପୃଥିବୀ
ବଗିଚାର ଏକଲା କୋଣରେ
ଚୁପ୍‌ଚାପ୍ ସୁନ୍ଦର ଫୁଲଟି
ଫୁଟିଲା କେମିତି ।।

କି ଫୁଲ ସେ କି ନାମ ତାହାର
ଖାସ୍ ତୁ ଆସିବୁ ବୋଲି ।।

ଏଇ ଦେଖ୍
ତୁ ଆସିବୁ ବୋଲି
ଅଳନ୍ଧୁରେ ଭରପୂର
ଅସଜଡ଼ା ଜୀବନ ବି
ସୁନ୍ଦର ଲାଗୁଛି ।।

କୁଳୁକୁଳୁ ଶବ୍ଦକରି ମୋ ସାମ୍ନାରେ
ଜଳବେଣୀ ନୀଟିଏ
ଆବେଗରେ କୁଳୁକୁଳେଇ ହୋଇ
ବୋହିଯାଉଛି ।।

ତୁ ଆସୁଥା ମୋ ସ୍ୱପ୍ନରେ, ଭାବନାରେ
ମୁଁ ଏମିତି ମହକି ଯାଉଥାଏ
ଭିତରେ ଭିତରେ
କାଳ କାଳ ତୋ ଅପେକ୍ଷାରେ ।।



## ତମ ପାଇଁ

ଏ ଜୀବନ ଚମତ୍କାର
ଖାସ୍ ତମ ପାଇଁ
ଏକାବେଳେ ଖୁସି ସବୁ ବୁଣିବାଣି ହୋଇଯାଏ
ଘର ସାରା
ନିଃଶବ୍ଦରେ ଶବ୍ଦ ଫୁଟେ
ସମସ୍ତ ଆକାଶ ହୁଏ ତାରାମୟ
ମେଘମୟ ଏ ବ୍ରହ୍ମାଣ୍ଡ ସାରା ।।

ଖାସ୍ ତମ ପାଇଁ
ପାହାନ୍ତାର ବାସ୍ନା ଆସି କୁତୁକୁତୁ କରିଦେଇ
ଚାଲିଯାଏ ସର୍ବାଙ୍ଗରେ,
ଆକାଶ ଫଟାଇ
ବର୍ଷା ପଡ଼େ ଝରି
ତମ ଭଲପାଇବାର ମୁହୂର୍ତ୍ତରେ ।।

ଦିନେ ନିଶ୍ଚେ ମରଣ ବାହୁଡିଯିବ
ମୁଁ ମରିବି ନାହିଁ
ଖାସ୍ ତମ ପାଇଁ ।।

ବାସ୍ନାମୟ ଶୈଶବରୁ
ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ
ମୋ ପୃଥିବୀ ପରିଣତ ହେଉଥାଏ
ସୁନ୍ଦରିଆ ପୃଥିବୀରେ
ମୋ ପୃଥିବୀ ଶିହରିତ ହେଉଥାଏ
ପ୍ରତି ମୁହୂର୍ତ୍ତରେ ।।

ମୋତେ ନେଇ ବାରମ୍ବାର
ପହଞ୍ଚାଇ ଦେଉଥାଏ
ଅପାର୍ଥିବତାରେ ।।

ତମ ଭଲପାଇବାର ପୃଥିବୀରେ
ଜରା ଓ ମରଣ ନାହିଁ
ଅନୁତାପ ଅନୁଶୋଚନା ବି ନାହିଁ
ସ୍ୱର୍ଗଟିଏ ଛପି ଅଛି
ଛଳଛଳ ଜୀବନ ଭିତରେ
ଖାସ୍ ତମ ପାଇଁ
ମରଣ ବାହୁଡିଯିବ ମରିହେବ ନାହିଁ ।।

•

## ମେଘ ହୋଇ ଓହ୍ଲାଇବ

କାହିଁ ଆଜି ମୋ ସ୍ୱପ୍ନର ଗୋବରଲିପା ଅଗଣା
ତୁଳସୀ ଚଉଁରା
ମୋର ସୁଗନ୍ଧିତ ପିଲାଦିନ
ନାଲି କନିଅର
ଟଗର ଓ ସୋରିଷଫୁଲର ଗାଁ
ବୋମାବର୍ଷୀ ବିମାନରୁ
ଖଣ୍ଡ ଖଣ୍ଡ ଖସିପଡ଼େ ଆତ୍ମା ମୋର
ସୁକୁମାର ପିଲାଦିନ ମୋର ।।

ଏଇଠି ଥିଲା ମୋ ଗାଁ
ସୁବାସିତ ଶୈଶବର ଗାଁ
ଛଳଛଳ ସୁବର୍ଣ୍ଣର ରେଖାଟିଏ
ନଈ ହୋଇ
ଯାଉଥିଲା ବହି ।।

ସେଦିନ ଏଇଠି
ଏଇ ନୁଆଁଣିଆ ଚାଳଘର
ଏରୁଣ୍ଡିବନ୍ଧକୁ ଡେଇଁ

ମା ପଶିଥିଲା ଏଇ ଘରେ
ନୂଆବୋହୂ ହୋଇ ।।

ବିତିଯାଇଥିବା କେତେ
ସୁବର୍ଣ୍ଣ ସ୍ମୃତିର ଦିନ
କେତେ ନହୁନୁହାଣ ହେବାର ଦିନ
ସେ ଭୁଲି ନାହିଁ ।।

କଞ୍ଚା ହଳଦୀ ବାସ୍ନାରେ
ମହମହ ବାସୁଥିଲା ମାଆ ଦେହ
କଞ୍ଚା ଗୋବର ଓ ହଳଦୀର ମିଶ୍ରିତ ବାସ୍ନାରେ
ଘରର ଅଗଣା
ମନେ ହେଉଥିଲା
ମନ୍ଦିରର ସିଂହଦ୍ୱାର ।।

ସଞ୍ଜବେଳେ ଦୀପ ଆଲୁଅରେ
ମା ମୁହଁ ଦେବୀମୁହଁ ପରି
ବିହ୍ୱଳ ଉଜ୍ଜ୍ୱଳ ।।

ମିଛ ହେଲେ ବି ମୋତେ ସତ
ଏଇ ଗାଁ କଳାଘୁମର ପାଣିରେ
ସଉତୁଣୀ ଜ୍ୱାଳାରେ
ଜୀବନ ହାହୁ-ହାହୁ
ବଡ଼ମା ବଞ୍ଚୁଯାଉଥିଲା ସେଦିନ ।।

ଏଠି ଆଜି ଫୁଲ ନାହିଁ
ପତ୍ର ନାହିଁ
ଯେଉଁଆଡ଼େ ଅନାଇଲେ
ଧୂ ଧୂ ନିଆଁର ଝଲକ
ଚାରିଆଡେ ବିସ୍ଫୋରଣ
ମରୁଭୂମି ହିଁ କେବଳ ।।

ମୋ ଗାଁର ଶୋକଜର୍ଜରିତ କେତେ ମୃତ ଆତ୍ମା
ସେମାନଙ୍କ ଆଗେ ଦିଶେ ରକ୍ତବର୍ଣ୍ଣ
ବାରୁଦ ବାସ୍ନାରେ
ଅଙ୍ଗାରରେ
ସେମାନଙ୍କ ମୃତ ଦେହ
ଦିଶେ ମୋତେ ଆହୁରି ବିବର୍ଣ୍ଣ ।।

ସେଇ ମୃତ ଲୋକମାନେ
ମେଘ ହୋଇ ଓହ୍ଲାଇବେ
ଏଇ ବନ୍ଧ୍ୟା ପୃଥିବୀରେ
ଆସନ୍ତା ଜନ୍ମରେ ।।

ସେମାନଙ୍କ ସଙ୍ଗେ ମୋର ଦେଖା ହେବ
ଅନ୍ୟ କେଉଁ ନୂତନ ଗ୍ରହରେ
ପୁଣି ନୂଆ ସୂର୍ଯ୍ୟୋଦୟ ହେବ ପୃଥିବୀରେ
ଚମତ୍କାର ନଈଟିଏ ଫିଟିଯିବ
ସ୍ରୋତସ୍ୱିନୀ ହୋଇ
ଶସ୍ୟାୟିତ କରିଦେବ ଦୁଇକୂଳ
ଉଛୁଳାଇ ଦେଇ ।।

•

## ମୃତ୍ୟୁ ଡାକୁଛି ତ କେତେବେଳେ ଜୀବନ ଡାକୁଛି

ମୁଁ ଜାଣେନି କେତେବେଳେ କିଏ ଡାକିବ
ମୃତ୍ୟୁ ଡାକିବ କି ଜୀବନ ଡାକିବ ।।

କାହାର ସ୍ନେହମୟ ଡକରାରେ
ମମତାର ମହାନଦୀ ପରି
ବୋହିଯିବି ବିସ୍ତାରିତ ଜୀବନ-ମରୁରେ

ହାତ ବଢ଼ାଉଥିବି ଅହର୍ନିଶ ମମତାର ହାତ
ତାହାର ଘେନାଘେନି ଭାବରେ
ଭାବିତ ମୁଁ ହୋଇଯିବି
ଅଙ୍କୁରିତ ମୁହୂର୍ତ୍ତ ଭିତରେ ।।

ଅମୃତରେ ଭରପୂର ଧାନକେଣ୍ଡା ପରି
ଢୁଲୁଢୁଲୁ ହୋଇଯିବି ସ୍ନେହସିକ୍ତ କାକର ବିନ୍ଦୁରେ ।।

ଜାଣେନି କେତେବେଳେ କିଏ ଡାକିବ
ମୃତ୍ୟୁ ଡାକିବ କି ଜୀବନ ଡାକିବ ।।

ଆମ ଗାଁ ପାନ ବରଜର ଛାଇ
ଧାଡ଼ି ଧାଡ଼ି ଗିଲ ଗଛ
ପବନରେ ପାଚିଲା ଧାନର ବାସ୍ନା
ଝୋଟିପକା ଗାଉଁଲି ସକାଳ ।।

ହରି ଜେନା, ଚୁଣ୍ଡିଆ ବେହେରାର
ଢୋକ ଗିଳା ମୁମୂର୍ଷୁ ଜୀବନ ।।

କେମିତି ଏଡ଼ାଇଯିବି ଏ ସବୁକୁ
ପାଚିଲା ଧାନର ବାସ୍ନାକୁ
କ୍ଷେପଣାସ୍ତ୍ର ଘାଟି ତଳ ବ୍ୟଥିତ ଆତ୍ମାକୁ ।।

କେମିତି ଏଡ଼ାଇଯିବି
ସୁକୁମାର କାମିନୀ ପତ୍ରର ଆକୃପରି
ଚିତାକୁଟା ମୋ ଗାଁ ମୁହଁକୁ ।।

ଜୀବନ କେମିତି ସତେ ଫିଟିପଡ଼ିଛି
ଲାଙ୍ଗକୁଳୀ ବୁଦାରେ
ଅଙ୍କରାନ୍ତି ବଣରେ
ମହୁଫେଣାରେ ।।

ଜହ୍ନ ରାତି ପରି ଉଚ୍ଚାଟିତ ଜୀବନର ଡାକ
ଅଗ୍ନାଅଗ୍ନି ବନସ୍ତର ଅସୁରୁଣୀ ବୁଢ଼ୀଟିର

ସମ୍ମୋହନ ପରି
ପୁଲକିତ ଜୀବନର ଡାକ ।।

କେମିତି ଏଡ଼ାଇଯିବି ଏସବୁକୁ ??
ଜାଣିଛି ମୁଁ ମୃତ୍ୟୁ ମୋତେ ନିଃଶବ୍ଦରେ
ଡାକି ନେଇଯିବ
ବନ୍ଧୁପରି, ପ୍ରୀତିପରି
ଏଇ ପ୍ରେମମୟ ପୃଥିବୀରୁ;
ଭରପୂର ଜୀବନରୁ ।।

ଜୀବନ ଭିତରେ ମୃତ୍ୟୁ
ମୃତ୍ୟୁରେ ଜୀବନ ।।

ଜୀବନର ଡାକଠାରୁ ମୋତେ ଆଲୋଡ଼ିତ କରେ
ବେଳେବେଳେ ମୃତ୍ୟୁର ମୁଗ୍ଧ ଆଲିଙ୍ଗନ ।।

ଜାଣେନି କେତେବେଳେ କିଏ ଡାକିବ
ମୃତ୍ୟୁ ଡାକିବ କି ଜୀବନ ଡାକିବ ।।

•

## ତମ ଯିବାବେଳ

ତମ ଯିବାବେଳ
ଭୟଙ୍କର ଅଥଚ କରୁଣ
ସୁସଜ୍ଜିତ ଜୀବନରେ ସ୍ମୃତିରେ ଉଜ୍ଜ୍ୱଳ ।।

ଏ ଏକରକମ ଭଲ
ଚୁପ୍‌ଚାପ୍ ଚାଲିଯିବା ଭଲ
ସମୁଦ୍ରର ଢେଉପରି
କୂଳକୁ ଛୁଇଁବା
ଛୁଇଁ ସାରି ପୁଣି ଫେରିଯିବା ।।

ମୁଁ ଦେଖିଛି
ତମ ମନ ନିର୍ଜନତା
କପୋତୀଟି ଏକୁଟିଆ କାନ୍ଦୁଥିବା ବେଳେ
କେଉଁପରି ଗୋଟାପଣେ ଭିଜିଯାଅ
ଅନ୍ୟମନସ୍କତାରେ ।।

କେଉଁପରି ଝୁଲାମରା ହୋଇ
ଗଛପରି ଗୋଡ଼କୁ ମାଟିରେ ପୋତି
ଛିଡା ହୋଇ ରହିଥାଅ
ଦିକ୍‌ଦାର ଜୀବନ ଭିତରେ ।।

କେତେଶୀଘ୍ର ଘଟିଗଲା ଏତେ କଥା
ତମେ ଆଜି ସ୍ମୃତି ଖାଲି
ସ୍ମୃତି ହିଁ କେବଳ ।।

ଉଦାସୀନ ମୁହଁଟିଏ
ଝଲମଲ ଅକପଟତାରେ
ସ୍ପନ୍ଦିତ ମୁହୂର୍ତ୍ତ ଯେତେ ଜୀବନର
ଜାକି ଧରୁଥିଲ
ଆପଣା ଭିତରେ ।।

କିଏ ବା ବୁଝିଲା ତମ ନିର୍ଜନତା
ନିର୍ମାୟା ଚଢ଼େଇଟିର ଦୁଃଖ କ'ଣ
କିଏ ବା ଜାଣନ୍ତା
ସବୁ ସତ୍ତ୍ୱେ ଜୀବନକୁ ଆପଣେଇବାକୁ ଯାଇ
କେତେ ଯେ ଝୁଣ୍ଟିଛ
ସବୁ ମୁଁ ଜାଣେ ।।

ଜୀବନର ଧମକରେ ଡରିଯିବା ପରି ତମେ ଦିଶୁ ତ ନଥିଲ
ଏମିତି ହଠାତ୍ ତମେ ଚାଲିଗଲ
ଠିକ୍ କଲ ।

ମହାକାଳ ଛୁଇଁବା ଆଗରୁ
ତମେ ନିଜେ ମହାକାଳ ହୋଇଗଲ ।।

•

## ଏକୁଟିଆ ସକାଳର ପକ୍ଷୀ

ନୂଆ ବଉ ପରି
ଚମତ୍କାର ଅପୂର୍ବ ଠାଣିରେ
କେଉଁ ରାଜ୍ୟୁ ଆସିଲା ଏ ରୂପସୀ ଚଢ଼େଇ
ହଳଦୀରେ ଗରଗର
ଭୀରୁ ଚାହାଣିରେ
ସକାଳକୁ ସ୍ତବ୍ଧ କରି
କି ଗୀତ ଗାଇଲା,
ସକାଳ ମହକିଗଲା ଅପୂର୍ବ ବାସ୍ନାରେ
ଚାପା ଚାପା ମଧୁରତା ଛାଇଗଲା ଚାରିଆଡେ
ସବୁଦିନ ସକାଳଠୁଁ ସେଦିନ ସକାଳ
କେଉଁପରି ଅଲଗା ଦିଶିଲା ।।

ସତେ କି ସେଦିନ
ନୂଆ କିଛି ଅନୁଭବ ମୋ ମନର ଏକଲା ଭାବକୁ
ସ୍ତବ୍ଧ କରିଦେଲା ।।

ପକ୍ଷୀଟିର ସମସ୍ତ ସତ୍ତାରେ
କି ବିଚିତ୍ର ନିର୍ଜନତା
ମୁଗ୍ଧ ଆତୁରତା
ଆଲୁଅରେ ଆଲିଙ୍ଗିତା
ବିଭୋର କବିତା ।।

କବିତା କି ବାସିଗଲା ଚାରିଆଡ଼େ
ଗଛରେ ପତ୍ରରେ

ମୁଁ ଯାହାକୁ ଦେଖିବାକୁ ଇଚ୍ଛାକରି ଖୋଜୁଥିଲି ଆଜିଯାଏ
ମୋର ସେଇ ମୁଗ୍‌ଧ କୈଶୋରରେ
ସିଏ ଆଜି ଆପେ ଆପେ କେମିତି ଆସିଲା
ଅହର୍ନିଶ ଉଦାସୀନତାରେ ଘାରି ହେଉଥିବା
ମନଟାକୁ ଛୁଇଁଦେଇ ପୁଣି ଚାଲିଗଲା ।।

•

## ତା ପାଇଁ ସାରାଟା ଜୀବନ

କେବେ ଯଦି ଆସେ ସିଏ ନିଶ୍ଚୁପ ଖରାରେ
ଓଦା କରି ଆରୋପଣ;
ଅବା କେବେ ଶ୍ରାବଣର
ଘନଘୋର ବରଷାରେ
ସାରଙ୍ଗୀର ବିହାଗ ରାଗରେ ।।

କେମିତି ଜାଣିବ ସିଏ
ମୁଁ ଆଉ ଏଠାରେ ନାହିଁ
ମୁଁ କେଉଁ ସମୁଦ୍ର କୂଳ
କ୍ଷେପଣାସ୍ତ୍ର ଘାଟି ତଳେ
କ୍ଷତ ହୋଇ ଜଳେ
ମହମ ପରି ତରଳେ ପ୍ରତି ମୁହୂର୍ତ୍ତରେ ।।

ସେ ଆସିବ ଯେତେବେଳେ
ନିମ୍ବ ଗଛରେ ଫୁଲ ଫୁଟିଥିବ;
ଫୁଲ ଫୁଟି ବାସୁଥିବ ଚାରିଆଡ଼େ
ନିରୁଦ୍ଦିଷ୍ଟ ଶୈଶବକୁ ଅଣ୍ଡାଳିବ
ଗୁମୁରି ଉଠିବ ।
ସେ ଭୁଲି ନଥିବ କେବେ
ଗୁଣ୍ଡୁଚିର ପିଠି ପରି ପିଲାଦିନ
ନିମ୍ବ ଫୁଲ ସୋରିଷ ଫୁଲରେ ଭରା ଗାଁ'ର ଶୈଶବ ।।

ଛାଇ ପରି ସ୍ଥିର ଝିଅଟିଏ
ମଞ୍ଜିଷ୍ଠା ରଙ୍ଗର
ଆଖିରେ କରୁଣ ସୂର୍ଯ୍ୟାସ୍ତ ଭରି
ପଚାରିବ ମୋ କଥା
ଆଉ କେତେ କଥା
ସିଏ ବା ଜାଣିବ କାହୁଁ
କାହା ପାଇଁ ଅପେକ୍ଷାରେ ଅପେକ୍ଷାରେ
କଟିଗଲା ସାରାଟା ଜୀବନ ।।

•

## ଜଗାଇ

ଏତେ ନିରୁତ୍ତାପ ଏଇ ଜୀବନ ଯେ
ବେଳ ହୁଏ ନାହିଁ
ତୋ ପାଖକୁ ଥରେ ଯାଇ
ତୋର ସେଇ ଲୁଣି ହାୱା
କଜଳ ମେଘର ରଙ୍ଗ
ସୋରି ସୋରି ଖରା
ମୋ ମନରେ ବୋଳିହେବା ପାଇଁ ।।

ପ୍ରଥମ ଏନ୍ତୁଡ଼ି ନିଆଁ
ଜଳିଥିଲା ତୋରି ବୁକୁରେ
ମେଘମୟ ମୁହୂର୍ତ୍ତରେ
ତୋରି ସୁବର୍ଣ୍ଣରେଖା
ଚହଲା ପାଣିର ଢେଉ
ଚଢ଼େଇର ସ୍ୱର
ସବୁ ମିଶି ଏକାକାର ହୋଇଗଲା
ମୁଗ୍ଧ ପିଲାଦିନ ।।

ସେଇ ଶୈଶବରେ
ଫୁଲ ତୋଳା ସକାଳରେ
ଆମ୍ବଖିଆ ଖରାବେଳେ
ନିଜକୁ ତୁ ବାଣ୍ଟିଦେଲୁ ବିଶ୍ୱାସରେ
ମୋରି ସ୍ୱପ୍ନରେ । ।

ସେଇଦିନୁ
ସ୍ପନ୍ଦିତ ମୁଁ ହୋଇଗଲି ଗୋଟାପଣେ
ଭଲ ଲାଗିବାରେ । ।

କେଉଁ ଗୋପନୀୟ ଦୁଃଖ ତୋତେ ଆଜି ମ୍ରିୟମାଣ କରେ
କେତେ ଶୋକାକୁଳ ଦିଶେ ତୋ ସ୍ନିଗ୍ଧ ଚେହେରା । ।

ସ୍ୱପ୍ନର ଗୋଲକ ମୋର ତୁ 'ଜଗାଇ'
ସ୍ମୃତିର ବନ୍ଦରେ
ଅହର୍ନିଶ ଉବୁଟୁବୁ ହେଉଥାଏ
ବିହ୍ୱଳ ଶୈଶବ । ।

ନିଷ୍ପାପ ଆଖିରେ ତୋର ନାଚୁଥାଏ
ଚିତ୍ରିତ ଶ୍ରାବଣ । ।

ତୁ ଆଜି ସମର୍ପିଦେଲୁ ତୋ ନିଜକୁ ଅକୁଣ୍ଠରେ
ସମଗ୍ର ଜାତିର ଉତ୍ତରଣ ପାଇଁ
ସବୁ ସଂକୀର୍ଣ୍ଣତା ଭାଙ୍ଗି
ଗଢ଼ିଦେଲୁ ନୂଆ କରି
ତ୍ୟାଗ ଆଉ ମହିମାର ନୂତନ ସ୍ୱାକ୍ଷର । ।

•

*('ଜଗାଇ' କବିଙ୍କର ନିଜ ଗାଁ । କ୍ଷେପଣାସ୍ତ୍ର ଘାଟିର ପରିକଳ୍ପନା ଭିତରେ 'ଜଗାଇ' ଆଜି କ୍ଷତବିକ୍ଷତ ।)*

## ଭୁବନେଶ୍ୱରରେ ଗୋଧୂଳି ସହିତ ଏକାକାର ହେଲାବେଳେ

ଭୁବନେଶ୍ୱରରେ ଗୋଧୂଳି ସହିତ ଏକାକାର ହେଲାବେଳେ
ଗାଁର କାନ୍ଦୁରା ମୁହଁ ଭାରି ମନେପଡ଼େ ।
ସେ ମୁହଁରେ ଜମାଟ ବାନ୍ଧିଛି ମେଘ
ଆଷାଢ଼ର ଘନଘୋର ମେଘ ।
ଏଇ ମାତ୍ର ଲୁହରେ ଭିଜାଇଦେବ
ବଣ ବିଲ ସବୁଜ ଅରଣ୍ୟ । ।

ସେ ମୁହଁ ତ ମୋ ଗାଁର
ମାଆପରି ମହମହ ବାସେ ତା'ର ଦେହ
ସେ ବାସ୍ନାରୁ ବାରିହୁଏ
ଘେନାଘେନି ଭାବର ବଳୟ । ।

ପିଲାଦିନ ଗାଁ ସ୍କୁଲ ବଗିଚାରେ
ଅଲିଅଳି ଚିନିଚମ୍ପା ଗଛଟିଏ ।
ଫୁଲରେ କେବଳ ଫୁଲମୟ ହୋଇ
ଦୂରାଗତ କାହାକୁ କେଜାଣି
ଚାହିଁଥିଲା ଅନିମେଷ ଆଖିରେ ଅନାଇ । ।

ଆଜି ଏଇ ଗୋଧୂଳିରେ,
ଭୁବନେଶ୍ୱରରେ, ଏକାକାର ହେଲାବେଳେ
କେତେ ସରଳ ଆଉ ନିଷ୍କପଟ ଗାଁ ମୁହଁ
ଠିକ୍ ମୋର ମାଆ ମୁହଁ ପରି
ମନେପଡ଼େ, ଭାରି ମନେପଡ଼େ । ।

•

# ଗାଁ ସହ ମୁହାଁମୁହିଁ କବି ଆଜି ବହୁଦିନପରେ

ଦୀର୍ଘ ଲମ୍ବା କେତେ ବର୍ଷ ପରେ
କବି ପୁଣି ଥରେ
ରଖିଛି ଆଜି ତା ପାଦ
ଏ ଗାଁ ମାଟିରେ
ପ୍ରେମପରି ସୁନ୍ଦର ଗାଁରେ ।।

ବାରମ୍ବାର ସ୍ୱପ୍ନ ଦେଖୁଥିଲା ଗାଁ ସ୍ୱପ୍ନ
ବାରମ୍ବାର ପୁଛା କରୁଥିଲା ଗାଁ କଥା
ବାରମ୍ବାର ବାରମ୍ବାର ।।

ଏଥର ଗାଁକୁ ଆସି ଦେଖୁଛି ସେ
କେମିତି ଥୁଣ୍ଟା ଥୁଣ୍ଟା ଗାଁର ଜୀବନ
କେମିତି ଶୁଖିଲା ଶୁଖିଲା ହସ
ଗାଁ ପିଲାଙ୍କର ।
କେମିତି କରୁଣ କରୁଣ ଚାହାଣି
ବୁଢ଼ାମାନଙ୍କର ।।

ନିଃଶ୍ୱାସ ପରି ନୀରବ ଗାଁ ଦାଣ୍ଡ
କିଏ ଚୋରି କରିନେଲା କୋଳାହଳ
କିଏ ଚୋରି କରିନେଲା ହସ ଖୁସି
ଗାଁର ଐଶ୍ୱର୍ଯ୍ୟ ।
ଅନ୍ଧାରରେ ମୁହଁ ପୋତି ଛିଡ଼ାହୁଏ କବିଟିଏ
କେଉଁ ପୁରୁଣା ଦିନର ପକ୍ଷୀ;
ଚେଁଚେଁୟା ଚଢ଼େଇ ହେବ ବୋଧହୁଏ
ଚକ୍କର କାଟୁଥିଲା
ରାତି ଆକାଶରେ ।।

ଆତତାୟୀ ପରି ତାର ଚିତ୍କାରରେ
ଗାଁର ନୀଳ ଆତ୍ମା

କୋମଳ ବୈଭବ
ଥରିଯାଉଥିଲା ।।

ସୁନାରଙ୍ଗ ଶାଢ଼ି ପିନ୍ଧି କିଏ ଡାକେ ବାରମ୍ବାର
ପିଲାଦିନ ନାଁ ଧରି !
ଆକାଶରେ ସଂଜ୍ଞାହୀନ ନୀଳ ଜ୍ୟୋସ୍ନା
ଅଦୂରରେ ପେଚାର ଚିତ୍କାର
ମଫସଲୀ ଜୀବନକୁ ଆଉଁଶୁଛି କବିଟିଏ
ଏକୁଟିଆ ଅନ୍ଧାର ଭିତରେ ।।

•

## ଗୋଟାପଣେ କବି ହୋଇଯା

ମେଘପରି ଆଖି ମେଲା କରି
କାହାକୁ ଦେଖି ଲାଗିଛୁରେ ପୁଅ
ସୋରିଷଫୁଲର ପୃଥିବୀକୁ
ନା ଛୁଆ ଗୁଣ୍ଡୁଚିର ହସକୁରୀ ମାଆକୁ ।।

ତୋତେ ମୁଁ ଦେଖାଇଦେବି
ସୂର୍ଯ୍ୟୋଦୟ
ଆମ ଗାଁ ଧାନ ବିଲରେ
ସୂର୍ଯ୍ୟୋଦୟ
କ୍ଷେପଣାସ୍ତ୍ର ଘାଟି ତଳେ
ସୂର୍ଯ୍ୟୋଦୟ ।।

ନିର୍ମାୟା ମଣିଷର
ଗୁମୁରୁଥିବା ଆତ୍ମାରେ ସୂର୍ଯ୍ୟୋଦୟ
ତୁ ମାପିବୁ ଶାଖାୟିତ ଗଛଡ଼ାଳେ
କୁଟା କାଠିରେ ମନ୍ଦିର ତୋଳୁଥିବା
ମାଆ ପକ୍ଷୀଟିର ସ୍ପନ୍ଦିତ ଦୁକୁଦୁକିକୁ ।।

ଛୁଇଁ ଦେଖିବୁ
ଅମୃତ ସଞ୍ଚରିଯାଇଛି
କାଠିକୁଟାର ଘରଟିରେ
ମଧୁମୟ ହୋଇ ଉଠିଛି ପୃଥିବୀ
ଫୁଟି ଆସୁଥିବା ସକାଳ ପରି
ମନ ତୋର କୋମଳ ହୋଇଉଠିବ
ମଧୁର ଅନୁଭବରେ । ।

ତୁ ଅନୁଭବିବୁ
ତୋର ଅଗୋଚରରେ
ଫୁଲ ଭର୍ତ୍ତି ଗଛଟିଏ ପରି
ତୁ ମହକିଯାଉଛୁ ଭିତରେ ଭିତରେ । ।

ଅଗଣାରେ ଝରୁଥିବା ଗଙ୍ଗଶିଉଳି,
କୁମ୍ଭାଟୁଆର ଗମ୍ଭୀରିଆ ଡାକ,
ଲତାୟିତ ମାଧବୀ ଲଟାରେ
ଲୁଚିଥିବା ଡାହୁକର ସ୍ୱର;
ଅଶିଣର ଭୋର;
ସବୁ ଭିତରେ ତୁ ବିଛାଇ ହୋଇପଡ଼ିବୁ
ମଗ୍ନ ହୋଇଯିବୁ । ।

ସବୁକୁ ଚିହ୍ନାଇ ଦେବି
ମୋ ପିଲାଦିନର ମଫସଲୀ ସକାଳ,
କୈଶୋରର ନିଝୁମ ଖରାବେଳ
ଘୃଣା ଅସୂୟାର ଶିକାରକୁ
ଗୋଟାଏ ଫୁତ୍‌କାରରେ
ତୁ ଟାଳିଦେବୁ ଜାଣେ,
ତୋର ଭଲପାଇବାରେ
ଭରିଦେବୁ ପୃଥିବୀକୁ

ଜୀବନକୁ
ତୋର ସୁକୁମାରତାରେ
ଶରତର ସଞ୍ଜ
ଫଗୁଣ ଗୋଧୂଳି
ମୁଞ୍ଜରି ଉଠିବ
ଅପୂର୍ବ ପୁଲକରେ ।।

କେଡ଼େ ଶାନ୍ତ ସମାହିତ ସ୍ୱର ତୋର
କେଡ଼େ ସ୍ନିଗ୍ଧ କବିପ୍ରାଣ
ମେଘପରି ଆଖି ମେଲା କରି
ଦେଖିଯା ତୁ ଜୀବନକୁ
ସବୁ ନିର୍ଯାସ
ଶୋଷିନେ ଜୀବନରୁ
ଗୋଟାପଣେ ସ୍ପନ୍ଦିତ ହୋଇଯା
ଢୁଡୁବୁଡୁ ହୋଇଯା କବିତାରେ
ତୁ କବିତା ପାଲଟି ଯା ।

•

## ଅଶିଣ ଭୋର

ମହମହ ବାସ୍ନାରେ ମହକି ଉଠୁଛି ସକାଳ
ଅଶିଣର ନରମ ସକାଳ
ସମ୍ଭାବନାରେ ବିଶ୍ୱାସରେ
ଉଜ୍ଜ୍ୱଳ ସକାଳ ।

ଗଙ୍ଗଶିଉଳି ଫୁଲଟି
ଚୁପ୍‌ଚାପ୍ ଗଙ୍ଗଶିଉଳି ଫୁଲଟି
କେମିତି ଲୋଟିଯାଇଛି ଭୂଇଁରେ
ଧର୍ଷିତା କୁମାରୀ ପରି

ହିମାଳୟ ତରଳାଇ ଦେଉଛି
ତା ଅସହାୟତା
ତା ନୀରବତା
ବହୁଦିନ ପରେ
ପିଲାଦିନ ସଙ୍ଗେ ଭେଟାଭେଟି ହେଲାବେଳେ
ହସି ହସି ପାଛୋଟିନେଲା ଭୋର
ଅଶିଣର ଭୋର
ପରସ୍ତ ପରସ୍ତ
ସବୁ ନିର୍ମୋକ ମୋର ଖୋଲିଗଲା
ମନ୍ତ୍ରପରି ଧ୍ୱନିତ ହୋଇ ଉଠିଲା
ପୁଲକିତ ଅଶିଣ ସକାଳ
ସବୁ ଜଡ଼ତାକୁ ସଞ୍ଜୀବିତ କରିନେଲା
ଆବେଗରେ
ସ୍ପନ୍ଦିତ ହୋଇ ଉଠିଲା
ଭିତରର ସେଇ
କୋମଳ ଅନୁଭବଟି ମୋର ।।

ଫୁଲ ସବୁ ଫୁଟିଗଲେ
ଅପୂର୍ବ ଠାଣିରେ
ଚାରିଆଡ଼େ
କୁମ୍ଭାଟୁଆ, ଡାହୁକ, କଜଳପାତି
ସମ୍ମିଳିତ କୋରସ ଆରମ୍ଭ କଲେ
ଇଟା ଆଉ କଂକ୍ରିଟ୍‌ର ଜୀବନ ଭିତରେ ।।

ଏମିତି ଶୀତ୍‌କାର
ଏମିତି କେବେ ଘଟି ବି ନଥିଲା
ମୋ ଚେତନାରେ ।।

ସୁଗନ୍ଧିତ ଭୋରମୟ ହୋଇଗଲା ଚାରିଆଡ଼େ
ପବନ ପହଁରିଗଲା ଦିଗ ଦିଗନ୍ତରେ

ପରିଚିତ ପକ୍ଷୀର ସ୍ୱରରେ
ପିଲାଦିନ ନାଁ ଧରି ନାନାଦି ଶବ୍ଦରେ
ମୋତେ ଡାକିଦେଲା କିଏ
ଏମିତି ସ୍ନେହରେ ।।

ଅସଂଖ୍ୟ କାମିନୀ ମଲ୍ଲୀ ହେନା ଯୂଇ
ଏକ ସଙ୍ଗେ ଫୁଟିଗଲେ
ମୋ ଭିତରେ
ସେଇ ମୁହୂର୍ତ୍ତରେ
ମୁଁ ପାଲଟି ଯାଇସାରିଥିଲି
ନିରୀହ ଅଶିଣଟିଏ ।।

•

## ଗହଗହ ଧାନକ୍ଷେତ ପରି

ଆକାଶ ପରି ଗଭୀର ଭଲ ପାଇବାରେ
ସେ ଆବୋରିଥିଲା ଏଇ ସଂସାରକୁ
ଗହଗହ ଧାନକ୍ଷେତ ପରି
ସେ ମହକି ଯାଉଥିଲା ତା ଭିତରେ ଭିତରେ ।।

ଭଲ ପାଇବାର ଗଙ୍ଗୋଦକ ଛିଞ୍ଚି ଦେଇ
ସବୁ ଭୁଲ୍‌କୁ ସେ ଠିକ୍ କରି ଦେଉଥିଲା
ଖରା ଖାଇ,
ବର୍ଷା ଖାଇ
ଗଛଟି ଯେମିତି
ଶାଖାୟିତ ହୋଇଯାଏ
ପକ୍ଷୀ କାକଳୀରେ
ମାତୃତ୍ୱ ସ୍ଫୁରିତ ହୁଏ ପ୍ରତିଟି ପତ୍ରରେ ।।

ଠିକ୍ ସେଇ ଗଛପରି
ଅଫୁରନ୍ତ, ଉଚ୍ଛାଟିତ ଆବେଗରେ

ସେ କିପରି ଆପଣେଇ ପାରୁଥିଲା ସମସ୍ତଙ୍କୁ
କୋମଳ ମଧୁର ତାର ଭଲ ପାଇବାରେ ।।

ଅମୃତରେ ଭରପୂର ଧାନକେଣ୍ଡା ପରି
ସେ ତ ସବୁବେଳେ ସ୍ନେହ ଛଳଛଳ
ଆଜି ଏଇ ପତ୍ରଝଡ଼ା ମୁହୂର୍ତ୍ତରେ
ବିସର୍ଜନ ହୋଇସାରିଥିବା ଦେବୀମୂର୍ତ୍ତି ପରି
ଅତି ବେଶୀ ନୀରବ ନିଶ୍ଚଳ ।।

ମୋ ସ୍ମୃତିର ସ୍ଥାପତ୍ୟ ଭିତରେ
ଭିଜେଇ ଥରେଇଦିଏ ତାର ଏଇ ବାର୍ଦ୍ଧକ୍ୟର ଛାଇ
ଗହଗହ ଧାନକ୍ଷେତ ପରି
ଯିଏ ଦିନେ ଏତେ ବେଶୀ ଭରପୂର ଥିଲା
ସେଇ ଦେବୀ ପରି ମାଆ ଆଜି ବୁଢ଼ୀ ହୋଇଯାଇଛି ।।

•

## ଅବିଶ୍ୱାସ୍ୟ ଆନନ୍ଦରେ

ମୁଁ ତ ମୋର ବସିଥିଲି ଚୁପ୍‌ଚାପ୍
ମୋ ନିଜ ଭିତରେ
ମୋ ପଛରୁ ହଠାତ୍ ଡାକିଲା କିଏ ପିଲାଦିନ ନାଁ ଧରି
ପୁଲକିତ ହୋଇଗଲି ଗୋଟାପଣେ
ଅବିଶ୍ୱାସ୍ୟ ଆନନ୍ଦରେ ।।

ତାଳପତ୍ର ମଣ୍ଡି ହୋଇ
ସବୁଜିମାଭରା ଗାଁଟିଏ
ମୋତେ ଚମକାଇ ଦେଇ
ସବୁ ଅସଫଳତାକୁ ପୋଛିଦେଲା
ପ୍ରୀତିମୟତାରେ ।।

ସୋରିଷ ଫୁଲର ଗାଁ ପରି
ସ୍ମୃତି ତୋର ଉଡ଼ିଆସେ ପବନରେ
ଦିକ୍‌ଦାର ଜୀବନ ଭିତରେ ।।

ତୁ ଗଲା ଦିନୁଁ
ସ୍ନେହ ପ୍ରେମ ଭଲପାଇବାର ଶବ୍ଦ ସବୁ
କିଏ ଯେ ଚୋରାଇନେଲା
ମୋ ଭିତରୁ ।।

ଠିକ୍ ତୋ ପରେ
ବାପା ବି ଗଲେ ଯେ ଗଲେ
ଆଉ ଫେରିଲେନି
ଅଭିମାନ କରି ବୋଧେ ଆମରି ଉପରେ ।।

ମୁଁ ତ ମୋର ମୋ ନିଜ ଭିତରେ
ଖୁବ୍ ବେଶୀ ନିରାପଦ ଥିଲି
ସ୍ନେହ ଜୁଡୁବୁଡୁ ମନ
ସ୍ମୃତିରେ କରୁଣ
ବାରମ୍ବାର ମୋତେ ଆସି ଡାକିଦିଏ
ପିଲାଦିନ ନାଁ ଧରି ।।

ସେ ଡାକରେ ଏମିତି କି କଥା ଥାଏ
ମୁଁ ପହଞ୍ଚି ଯାଇ ସାରିଥାଏଁ
ଗେଣ୍ଡୁଫୁଲଭରା ଗାଁଟିରେ
ଯାହାକୁ ପାଇବା ପାଇଁ
ଆପଣେଇବାକୁ ଯାଇ
ରାଜପଦ ସମସ୍ତ ଐଶ୍ୱର୍ଯ୍ୟ
ତୁଚ୍ଛ ହୋଇଯାଏ ।।

କିଏ ଡାକେ ଅବେଳରେ
ପିଲାଦିନ ନାଁ ଧରି

ସୋରିଷ ଫୁଲରେ ଭରା ଗାଁ ତାକେ
ପୁଲକିତ ହୋଇଯାଏ ଗୋଟାପଣେ
ଅବିଶ୍ୱାସ୍ୟ ଆନନ୍ଦରେ ।।

•

## କାହାକୁ ଅପେକ୍ଷା କରିବ କାଦମ୍ବିନୀ

କାହାକୁ ଅପେକ୍ଷା କରିବ କାଦମ୍ବିନୀ
ଜୀବନକୁ ?
କଣ ଦେଇଛି ଜୀବନ ତାକୁ ?
କୌଣସି ଉଦାସୀନ ନିର୍ଜନ ଖରାବେଳେ
କାଦମ୍ବିନୀ ଗୁମ୍‌ସୁମ୍ ହୋଇଯାଏ ବେଳେବେଳେ
କେମିତି ଜୀବନ ଇଏ
କାକର ବୁନ୍ଦାଏ ପରି
ସବୁଠି ସଂଯୁକ୍ତ ପୁଣି ସବୁଠି ବିଭକ୍ତ
ଶ୍ୱାପଦ ସଙ୍କୁଳ ଏଇ ଘର ପାଇଁ
ଅକୃତଜ୍ଞ, ସ୍ନେହହୀନ ସ୍ୱାମୀ ପୁତ୍ରର ଅକ୍ଟୋପାଶ ଭିତରେ
ଉବୁଟୁବୁ ହୋଇଯାଉଛି କାଦମ୍ବିନୀ ।।

କେତେବେଳେ ବିନ୍ଦୁଟିଏ
କେତେବେଳେ ଅବିଭକ୍ତ ସତ୍ତାଟିଏ କାଦମ୍ବିନୀ
ଘୃଣା ଭୟ ଅସହାୟତାରେ
ସେ ଲୁଚିଯାଉଛି ବେଳେବେଳେ
ସେ ନୀରବି ଯାଉଛି ବେଳେବେଳେ ।।

କାଦମ୍ବିନୀ ଖୋଜୁଛି ନିଜକୁ
ସୁନ୍ଦର ସ୍ମୃତିର ଶୈଶବକୁ
ଗୁଣ୍ଡୁଚିର ପିଠିପରି ସୁନ୍ଦର ଶୈଶବ
କେଉଁ ଦୁଷ୍ଟ ପିଲାର
ଛିଣ୍ଡା ଗୁଡ଼ି ପରି
ଭବିଷ୍ୟତ ଲଟକି ରହିଛି

ଦୂର ଆମ୍ରଗଛରେ
ମରୁଭୂମି ପରି ହାହାକାର
ନିଷ୍ଠୁର ବର୍ତ୍ତମାନ
କାହାକୁ ଅପେକ୍ଷା କରିବ କାଦମ୍ବିନୀ
ତାର ହଜିଯାଇଥିବା ସ୍ମୃତିର
ଘେନାଘେନି ଭାବକୁ
ନା ମ୍ରିୟମାଣ ଭବିଷ୍ୟତକୁ । ।

•

## ଘୁମୁସର

ତୋ ନିର୍ଜନ ଐଶ୍ୱର୍ଯ୍ୟରେ
ମୌନ ଗାମ୍ଭୀର୍ଯ୍ୟରେ
ମୁଁ ହଜିଗଲି ଘୁମୁସର
ଚାରିଆଡ଼େ ହେମନ୍ତ ସକାଳର
ବିଳମ୍ବିତ ବାଗେଶ୍ରୀରାଗର ସଞ୍ଚାର । ।

ଯେଉଁଆଡ଼େ ଆଖି ବଢ଼ାଇଲେ
ଚାରିଆଡ଼େ ଫୁଲପକା ନଦୀ ଓ ପର୍ବତ
ମନ ବଢ଼ାଇଲେ
ଚାରିଆଡ଼େ ଶୋଭାବନ୍ତ ଐଶ୍ୱର୍ଯ୍ୟମଣ୍ଡିତ । ।

ପର୍ବତ ଭିତରେ ପର୍ବତ
ମେଘ ଭିତରେ ମେଘ
ସବୁ ନୀରବ ନିର୍ଜନ
ଆବେଗ ସ୍ପନ୍ଦିତ । ।

ଅଙ୍କୁରିତ ମୁହୂର୍ତ୍ତ ଭିତରେ
ଅଚିହ୍ନା ପକ୍ଷୀଙ୍କ ଏଇ ମିଳନ ମୁଦ୍ରାର ଛାଇ
ସ୍ୱପ୍ନରେ, ସ୍ମୃତିରେ
ମୋର ସୁଷୁପ୍ତି ଭିତରେ
ଚେତନାରେ । ।

ଜୀବନର ଅମୃତ ଲଗ୍ନରେ
କେବେ ବି ମୁଁ ତୋତେ ଭେଟି ନଥିଲି ଘୁମୁସର
କବିତୀର୍ଥ ଘୁମୁସର ।।

ନିର୍ବାକ୍ ଅନୁରାଗରେ
ଆଲିଙ୍ଗନର ମୁହୂର୍ତ୍ତରେ
ହଂସରାଳି ଅବା ମାଣିକଯୋଡ଼ିର
ଅସ୍ଫୁଟ ଶବ୍ଦରେ
ମୁଁ ଲୁଚିଯାଉଛି ତ କେତେବେଳେ
ବୁଡୁବୁଡୁ ହୋଇଯାଉଛି କବିତାରେ ।।

ଶିଳାରେ ଶିଳାରେ ତୋର
କବିତା ଫୁଟିଛି ଘୁମୁସର
ରେଣୁକା ଓ କୁସୁମୀ ନଦୀର
ସୁନା ଝଲମଲ ପାଣି
କ୍ରମଶଃ ଉଚ୍ଚାଟିତ ହୋଇଉଠୁଛି
ଫୁଲକର ସୁଗନ୍ଧରେ ।।

ନାନାବିଧ ପକ୍ଷୀଙ୍କର ମଞ୍ଜୁଳ ଶବ୍ଦରେ
ପ୍ରତ୍ୟେକ ମୁହୂର୍ତ୍ତ ଏଠି ଗର୍ଭିତ ଓ ଅଙ୍କୁରିତ
ଏଇ ହେମନ୍ତର ଗେରୁଆ ଖରାର ଲଗ୍ନରେ ।।

ଏ କିପରି ଅନୁଭବ ଘୁମୁସର ?
କି ମହାର୍ଘ ମହକରେ
ମୋ ଚେତନା ମହକି ଉଠୁଛି
ବେଳୁବେଳ ।
ଅମୃତରେ ଭରିଯାଉଛି
ମୋର ମନପ୍ରାଣ ।।

ଅପୂର୍ବ ତନ୍ମୟଭାବ
ମୋ ଭିତରେ ସଞ୍ଚାରିତ

ସମର୍ପଣର ଶାଶ୍ୱତ ମୁଦ୍ରାରେ
ମୁଁ ସମାସୀନ ଘୁମୁସର
କବି ମନୀଷୀର ତୀର୍ଥ ଘୁମୁସର ।।

•

## ଏଇ କୁଲାଡ଼ଗଡ଼, ଘୁମୁସର

ମହୁବସା ଭାଙ୍ଗୁଥିବା
ବଣୁଆ ମଣିଷର ସ୍ୱପ୍ନ ଆଉ ସମ୍ଭାବନା
ଘୁମୁସର ।।
ଏ ପାହାଡ଼ ଧାରରେ
ନଈ କୂଳ ସବୁଜ ଉପତ୍ୟକାରେ
ଲାବଣ୍ୟବତୀ ନଈ ହୋଇଯାଇଛି
ଏଇ ଘୁମୁସରର ନେଳିଆ ଖରାର ଲଗ୍ନରେ ।।
ଶାଗୁଆନ ଗଚରେ ମେଘ
ହ୍ରଦ ଜଳରେ ମେଘ,
କୁଲାଡ଼ଗଡ଼ରେ ମେଘ
ମେଘ ଆଜି ସ୍ଥାପତ୍ୟ ପରି ସୁନ୍ଦର ।।
ପକ୍ଷୀ କାକଳୀରେ
କି ଅପୂର୍ବ ଶୀତ୍‌କାରରେ
ଏ ସମୟ ସୁବାସିତ ଗର୍ଭିତ ।।
ଏ କିପରି ସମ୍ଭବୁଛି
ଫୁଲ ସବୁ ଆପଣା ଇଚ୍ଛାରେ
ଫୁଟୁଛି ଓ ମଉଳୁଛି ।।
ବେଳେବେଳେ
ଏମିତି ନିର୍ଜନତାରେ
ମୁଁ ପାଲଟିଯାଉଛି ଯେମିତି
ସ୍ମୃତି ଜୁଡୁବୁଡୁ ଏକ ଗାଉଁଲୀ ସକାଳ ।।

•

## ଅତୀତ ଆଜି ସ୍ଥାପତ୍ୟ ପାଲଟିଯାଇଛି

ଆଜି କଣ ଜହ୍ନର ଜନ୍ମଦିନ
ଚାରିଆଡ଼େ ଡରାଟ ଫୁଲର ଜ୍ୟୋସ୍ନା
ମହମହ ମହକୁଛି
ସପ୍ତପର୍ଣ୍ଣୀ ଶାଖାରେ ଶାଖାରେ
ଭଲପାଇବାର ସ୍ୱର୍ଣ୍ଣରେଣୁ କିଏ ବିଞ୍ଚିଦେଇ ଯାଇଛି ।।
ନିଃଶବ୍ଦ ନୀରବ ଏଇ ମୁହୂର୍ତ୍ତରେ
ଆଖପାଖରେ କେଉଁଠି
ବଂଶୀସ୍ୱନ ପରି ନଈଟିଏ ବୋହିଯାଉଛି ଯେମିତି ।।
ତାର ମଧୁରତାରେ
ସୁଗନ୍ଧରେ
ଅତୀତ ଆଜି ସ୍ଥାପତ୍ୟ ପାଲଟିଯାଇଛି ।।
ଶୁଭ୍ର ସ୍ୱଚ୍ଛ ଧବଳିତ ମୁହୂର୍ତ୍ତରେ
ମୟୂରାକ୍ଷୀ ଜଳ ଭଉଁରିର ଆବର୍ତ୍ତ ଭିତରେ
ଅମୃତ ବୁନ୍ଦାରୁ କେଇବୁନ୍ଦା
ଛିଟିକିପଡିଛି ସତେ କି ।।
ସପ୍ତପର୍ଣ୍ଣୀ ପତ୍ରରୁ ଫୁଲରୁ
ଝୁରୁଝୁରୁ ବାସ୍ନା ଆସି
ମୋ ଆତ୍ମାକୁ ସଞ୍ଚରି ଯାଉଛି ।।
ମୋ ଅବଚେତନରେ
ଅଲେଖା କବିତା କେତେ
ଲେଖି ହୋଇଯାଉଅଛି
ମୋ ଅନ୍ତଃସ୍ଥଳରେ ।।
ଜହ୍ନ ଆଲୁଅରେ
ମୟୂରାକ୍ଷୀ ଜଳ ଭଉଁରିରେ
ସ୍ମୃତି ଆଜି ଏ ମନରେ
ଖୋଦିତ ହୋଇଛି
ଅତୀତ ଆଜି ସ୍ଥାପତ୍ୟ ପାଲଟିଯାଇଛି ।।

•

# ତୋ ଭିତରେ ତୁ ନା ଆଉ କିଏ

ଚିତ୍ରିତ ସକାଳଟିଏ ଓହ୍ଲାଇ ଆସିବା ଆଗୁଁ
ପୃଥିବୀକୁ
ତୁ କେମିତି ଚୁପ୍‌ଚାପ୍ କାହାକୁ ନ କହି
ଚାଲିଗଲୁ ତଥାଗତ ପରି
କାଶୀ କିମ୍ବା କୁଶୀନାରା
କେଉଁ ରିଷିକେଶ କେଉଁ ମଥୁରା ।।

ଗୈରିକ ଚେତନା ତଳେ
ପ୍ରଜ୍ଞାଦୀପ୍ତ ସଂକଳ୍ପ ଭିତରେ
କେମିତି ଯେ ଭୁଲିଗଲୁ
ଉଜୁଡ଼ା ଧାନକ୍ଷେତ ପରି
ମା'ର କରୁଣ ମୁହଁ
ଯିଏ ତାର ପଣତ କାନିରେ
ଆଜିଯାଏ ଢାଙ୍କି ରଖିଥିଲା ତୋତେ
କାଳେ କାହା କୁନଜର ଲାଗିଯିବ
ସକାଳ ପରି ସୁନ୍ଦର ଜୀବନ ଉପରେ ।।

ଜୀବନକୁ ଭଲପାଉଥିଲୁ ବୋଲି
ନିମ୍ବଫୁଲ ବାସ୍ନା ତୋତେ ଭଲ ଲାଗୁଥିଲା
ଛତୁ ପୋଡ଼ା ଭଲ ଲାଗୁଥିଲା
ନିରୋଳାରେ ସମସ୍ତଙ୍କ ଅଜଣାରେ
ଛିଡ଼ାହୋଇ ବାପାଙ୍କ ଫଟୋ ସାମ୍ନାରେ
ଲୁଚାଇ ଲୁଚାଇ କାନ୍ଦୁ;
ଲୁହ ପୋଛୁ ଆସକ୍ତିରେ
ନା ନିରାସକ୍ତତାରେ ??

କର୍ଦ୍ଦମାକ୍ତ ଜୀବନ ଭିତରେ
ଗୁମ୍‌ସୁମ୍ ହୋଇଯାଉ ବେଳେବେଳେ

ତୁ ଇଚ୍ଛା କରିଥିଲେ
ସବୁକିଛି ଘଟିଥାନ୍ତା
ତୋ ଇଚ୍ଛାନୁସାରେ ।।

କେଉଁ ରିଷିକେଶ କେଉଁ ମଥୁରା
କାଶୀ କିମ୍ବା କୁଶୀନାରା
କୁଆଡେ ତୁ ଚାଲିଗଲୁ
ସବୁ ଅନିଭୋଗ ମୂର୍ଚ୍ଛି ଦେଲୁ ।।

ମୋତେ ଲାଗୁଛି ଯେମିତି
ତୁ ଲଣ୍ଡିତ ମସ୍ତକରେ ଧ୍ୟାନସ୍ଥ ହୋଇ
କୃତାଞ୍ଜଳି ପୁଟରେ ବସି ରହିଛୁ
ଏଇ ଆଖପାଖରେ କେଉଁଠି ।।

ତୋ ହୃଦୟରୁ;
ତୋ ଆତ୍ମାରୁ
ନିର୍ଗତ ପଦ୍ମଫୁଲ
ଚନ୍ଦନ ବାସ୍ନାରେ
ଚତୁର୍ଦ୍ଦିଗ ମହକି ଉଠୁଛି ।।

•

## ତୁମେ ଆସିଲେ ତ ନୂଆବର୍ଷ ଆସେ

ତୁମେ ଆସିଲେ ତ ନୂଆବର୍ଷ ଆସେ,
କର୍ପୂର ବିଞ୍ଚିଯାଏ ପତ୍ରରେ ଫୁଲରେ,
ଅମୃତ ବୁନ୍ଦାରୁ କେଇ ବୁନ୍ଦା
ସଞ୍ଚରିଯାଏ
ମୋ ଆତ୍ମାରେ, ମୋ ଅନ୍ତଃସ୍ଥଳରେ ।।

ନୂଆବର୍ଷ ଚମତ୍କାର ଖାସ୍ ତମ ପାଇଁ
ଏକାବେଳେ ଖୁସି ସବୁ ବୁଣିବାଣି ହୋଇଯାଏ ଘରସାରା ।।

ନିଃଶବ୍ଦରେ ଶବ୍ଦ ଫୁଟେ
ସମସ୍ତ ଆକାଶ ହୁଏ ତାରାମୟ
ମେଘମୟ ଏ ବ୍ରହ୍ମାଣ୍ଡ ସାରା । ।

ଯେଉଁ ଚଢ଼େଇମାନେ କେବେ ବି ଆସନ୍ତିନି
ଆଜି କେମିତି କେଜାଣି
ସାରା ଅଗଣାକୁ
ଭରି ଦେଉଛନ୍ତି
ଚୁପୁରୁଚାପୁରୁ ଶବ୍ଦରେ । ।

ଦେଖ ଫୁଲ ଟବ୍‌ରେ
କେଡ଼େ ସୁନ୍ଦର ଯୋଡ଼ିଏ
ଗୋଲାପ ଫୁଟିଛି
ଦୁଇଟି କଅଁଳ ନିଷ୍ପାପ ଶିଶୁପରି । ।

ଆଜିକାଲି ସେ ଆଡ଼କୁ ଜମା
ନିଘା ନାହିଁ ତମର
ଆଗେ ତ ତମେ ଏମିତି ନଥିଲ
ସବୁ ଫୁଲକୁ ଭଲପାଉଥିଲ
ମୋତେ କେଉଁ ଫୁଲ ଭଲ ଲାଗେ
ସେ କଥା ଆଜି ଭୁଲିଯାଇଛ । ।

ସେଦିନ ପରି ଆଜି ବି ଆସ
ପରସ୍ପରକୁ ଗୋପନରେ କିଛି କହିବା ।
ତମେ ଏତେ କଥା ବୁଝନାହିଁ
କେମିତି ଜାଣିବ
ତମେ ଆସିଲେ ଯେ ନୂଆବର୍ଷ ଆସେ । ।

•

## କେଉଁ ରିଷିକେଶ କେଉଁ ମଥୁରା

କି ଅପୂର୍ବ ତଲ୍ଲୀନତା ତୋ ଭିତରେ
କି ଅପୂର୍ବ ରଙ୍ଗରାଗରେ ଉଦ୍‌ଭାସିତ
ଜଳବିନ୍ଦୁଟିଏ ତୁ
କିଏ ତୋତେ ଆକର୍ଷିଲା
ଚିରଞ୍ଜୀବୀ ସମୟର ଧ୍ୱନିମୟତାରେ ।।

ସମର୍ପଣର ସମସ୍ତ ମୁଦ୍ରାରେ
ତୁ ଉଦ୍‌ଭାସିତ ହୋଇଗଲୁ
ଆନନ୍ଦରେ, ପରିପୂର୍ଣ୍ଣତାରେ ।।

କେଉଁ ରିଷିକେଶ କେଉଁ ମଥୁରା
ତୋ ଭିତରେ ତଲ୍ଲୀନତା ଭରି ଦେଲା
କାଳୋତ୍ତର ମୁହୂର୍ତ୍ତର ସ୍ପନ୍ଦନ ମଧ୍ୟରେ ।।

•

## ଭାରତବର୍ଷ (୧)

ସୁବର୍ଣ୍ଣ ଭୂମିର ଦେଶ ମୋ ଭାରତବର୍ଷ
ଉପନିଷଦର ଦେଶ ମୋ ଭାରତବର୍ଷ
ଆର୍ଯ୍ୟଋଷି ଗାୟତ୍ରୀ ମନ୍ତ୍ରରେ
ଉଚ୍ଚାରିତ ଧ୍ୱନିତ ମୋ ଦେଶ
ସ୍ୱାଭିମାନୀ ମୋ ଭାରତବର୍ଷ ।।

ଏ ଦେଶର ଫୁଲରେ ପତ୍ରରେ
କୃଷ୍ଣା କାବେରୀ କିମ୍ବା ନର୍ମଦାର
ବାଲୁକାଶଯ୍ୟାରେ
ସୋରି ସୋରି ଜ୍ୟୋତ୍ସ୍ନା ପଡ଼େ ଝରି
ବଂଶୀସ୍ୱନ ପରି

ଚୌଦିଗ ଧ୍ୱନିତ ହୁଏ
ଆର୍ଯ୍ୟଋଷି ପ୍ରଣବ ଓଁକାରେ ।।

ଅଶିଣର ଧାନ ବିଲ ଗହଳ କ୍ଷେତରେ
କେମିତି ନଦାନଦି ହୋଇଥାଏ ଧାନକେଣ୍ଡା
ଶିଶିରବିନ୍ଦୁରେ ।।

କିଏ ଗଢ଼ିଦେବ ଭାରତର ଗାଁ ପରି ଗାଁଟିଏ
ମୟୂର ନାଚର ଗାଁ
ଧାଡ଼ି ଧାଡ଼ି ଗିଲ ଗଛ ଗୁଞ୍ଜଫୁଲ ଜହ୍ନ ଆଉ ନଈ
ଯେଉଁ ଗାଁ ଚିତାକୁଟା ମୁହଁ ତଳେ
ମୁକ୍ତା ପରି ଚକ୍‌ଚକ୍ କରୁଥାଏ
ନୋଳକର ଛାଇ ।।

କିଏ ଗଢ଼ିଦେବ ଆଜି ଭାରତ ପରି ଭାରତଟିଏ
ଯେଉଁଆଡ଼େ ଅନାଇଲେ ଦେଖାଯିବ
ଦେବୀ ଦୁର୍ଗାପରି ମୁହଁଟିଏ ଭାରତମାତାର
ଯିଏ ବାଟ ଓଗାଳି ଛିଡ଼ାହୋଇଛି
ଦୁର୍ଭିକ୍ଷ ଓ ଦୁର୍ବିପାକର ।।

କିଏ ଗଢ଼ିଦେବ ଭାରତ ପରି ଭାରତଟିଏ
ଯାହାର ପବିତ୍ର ମାଟିରେ
ଥାପି ଦେବି ଚାରାଗଛଟିଏ
ଭଲ ପାଇବାର ଚାରାଗଛ
ଯେଉଁ ଗଛ ଡାଳପତ୍ର ମେଲି
ମହକି ଉଠିବ
ତ୍ୟାଗ ଆଉ ତିତିକ୍ଷାର
ଅସଂଖ୍ୟ କଢ଼ରେ ।।

ତୀର୍ଥଭୂଇଁ ଏ ଭାରତ
ସ୍ୱାଭିମାନୀ ମୋ ଭାରତମାତା

କ୍ଷୀରାବ୍ଧି ସାଗର ତଳେ
ପବିତ୍ର ବେଦର ଧ୍ୱନି
ମହାର୍ଘ ସଂହିତା ।।

ଏ ସେହି ଭାରତବର୍ଷ ଯିଏ ଆଜି ଆଙ୍କିଯିବ
ତା ବାଞ୍ଛିତ ସକାଳର
ସୋରି ସୋରି ଝୋଟି
ଗଛରେ ପତ୍ରରେ
ବିଚ୍ଛୁରିତ ଆଲୋକରେ
ଉଦ୍‌ଭାସିତ ହେବ
ଆଗାମୀ ଦିନର ଉଷା
ବିଶ୍ୱାସର ସ୍ଥିର ପ୍ରତିଲିପି ।।

•

## ତୋତେ ମୁଁ ଚିହ୍ନେ ଓଡ଼ିଶା

ତୋତେ ମୁଁ ଚିହ୍ନେ ଓଡ଼ିଶା ଭଲଭାବେ ଜାଣେ
ଭୁବନେଶ୍ୱରରେ କିମ୍ୱା ବାଲିଆପାଳରେ
ସମୁଦ୍ର ଓ ସୁବର୍ଣ୍ଣରେଖାରେ
ଗୋଧୂଳି ସହିତ ଏକାକାର ହେଲାବେଳେ
ତୋତେ ମୁଁ ଅନୁଭବିଛି
ପ୍ରାଣମୟ ଜୀବନର ପବିତ୍ର ବେଦର ଧ୍ୱନି
ଓଁକାର ତଳେ ।।

ହଳଦୀରେ କୁତୁବୁଡୁ ତୁନିତାନି ଝିଅଟିଏ
ତୁ ଓଡ଼ିଶା ।।

ତରଭୁଜ, ଗଦାମ୍ୱବଣ ଭିତରେ
ଲୁଚିଥିବା ମୋ ଗାଁର
ମେହନତି ମଣିଷର ଆଶା ।।

ଚାଳଛପର ଘର ଭିତରେ
ପଣିକିଆ ମୁଖସ୍ଥ କରୁଥିବା
ଖୁଙ୍କୁବୁଙ୍କ ପିଲାଟିଏ ତୁ ଓଡ଼ିଶା
ପଖାଳ କଂସାରେ ହାତକୁ ପୂରାଇ
ସ୍ୱପ୍ନ ଦେଖୁଥିବା ଚୁଣ୍ଡିଆ ବେହେରାର
ଚିରନ୍ତନ ଆଶା ।।

ତୋତେ ମୁଁ ଚିହ୍ନେ ଓଡ଼ିଶା ଭଲଭାବେ ଜାଣେ
ବାରମ୍ବାର ତଣ୍ଟି ତୋର ଚିପାଯାଏ
ବାରମ୍ବାର କିରାସିନି ଢାଳି
ବଳିଦାନ ଦିଆଯାଏ ତୋ ଆତ୍ମାକୁ
ଚେତନାର ଟୁକୁରାକୁ
ଆର୍ତ୍ତଚିତ୍କାରରେ
ଥରିଉଠେ ପୃଥିବୀର ଛାତି
ଅସହାୟତାରେ
ବେଦନାରେ
ଘାରି ହେଉଥିବା
ମା'ଟିଏ
ନାରୀଟିଏ ତୁ ଓଡ଼ିଶା ।।

ଯେଉଁଆଡ଼େ ଯାଏଁ ମୁଁ
ଯେଉଁଠି ବି ଥାଏଁ
ମାଟି ପାଣି ପବନର
ସୁକୁମାର ଲଳିତ ରାଗିଣୀଟିଏ
ଚେତନାକୁ ଘେରି ରହିଥାଏ ।।

•

## ଶ୍ରୀମନ୍ଦିର କଳ୍ପବଟ ତଳେ

ଏ କି ବାସ୍ନା ମୋ ମନରେ
ମୋ ଅନ୍ତଃସ୍ଥଳରେ
ମୋ ଆତ୍ମାରେ
ମୋ ଚେତନାରେ ।।

ମୁଁ କେମିତି ମୁକୁଳିତ ପତ୍ରପରି
ଫୁଲପରି
ବିକଶି ଉଠୁଛି ଆପେ ଆପେ
ମୁଁ କେମିତି ଚର୍ଚ୍ଚିତ ଚନ୍ଦନ ପରି
ଦୀପର ସୁଗନ୍ଧ ପରି
ମହକିଯାଉଛି ଆପେ ଆପେ
କଳ୍ପବୃକ୍ଷ, ଶ୍ରୀମନ୍ଦିର, ସ୍ୱର୍ଗଦ୍ୱାର
ସ୍ନାନବେଦୀ ବାଇଶି ପାହାଚ
ସବୁଠାରେ ମୋ ଚେତନା
ମେଲିଯାଏ ପଦ୍ମର ପାଖୁଡା ପରି
ସବୁଠାରେ ମୋ ଚେତନା
ସ୍ପନ୍ଦିତ ଓ ଅଙ୍କୁରିତ
ଭୋରବେଳ ମହୁମାଛି ପରି ।।

ଏଇ ବୃକ୍ଷ ପ୍ରତିଟି ଶାଖାରେ
ତ୍ରିକାଳ ଯେମିତି ଝୁଲି ରହିଛି
ବାୟାବସା ପରି
ମୋର ଭାଗ୍ୟ, ଭବିତବ୍ୟ
ସ୍ୱପ୍ନ ସ୍ମୃତି ସବୁ କିଛି
ଗୋପ୍ୟ ଏଇଠାରେ ।।

ବହୁଦିନ ପରେ ଆଜି ଏମିତି ଭାବରେ
ଶ୍ରୀକ୍ଷେତ୍ରର ଆକର୍ଷଣ

ସୂର୍ଯ୍ୟାସ୍ତରେ ସମୁଦ୍ର ଓ ଝାଉଁବଣ
ଚିତାକୁଟା ଆକାଶରୁ ଫାଳେ ।।

ତମ ସଙ୍ଗେ ଆଜି ବୋଧେ ଦେଖାହେବ
ଏଇ ସୂର୍ଯ୍ୟାସ୍ତରେ
ମୁଁ କେମିତି ମୁକୁଳିତ ପତ୍ରପରି
ଫୁଲପରି ବିକଶି ଉଠୁଛି ଆପେ ଆପେ
ମୋ ଭିତରେ
ମୁଁ କେମିତି ମହକି ଉଠୁଛି ଦୀପର ସୁଗନ୍ଧ ପରି
ଚର୍ଚ୍ଚିତ ଚନ୍ଦନ ପରି
ଏକୁଟିଆ ମନ୍ଦିର ବେଢ଼ାରେ ।।

•

## ତମ ଦୁହିଁଙ୍କର ଆସିବା ଯେମିତି ସୂର୍ଯ୍ୟୋଦୟ

ତମେ ଦୁହେଁ ଆସିଲେ ଯେ
ସବୁ ଭଲଲାଗେ ଆପେ ଆପେ
ବାଇଚଢ଼େଇ, ପ୍ରଜାପତି
ଚୁଳିଆ ଚୁଟି ଚଢ଼େଇ
ନିଜ ଭାଷାରେ ଗୀତ ଗାଇବା ଆରମ୍ଭ କରନ୍ତି ।।

ସବୁଠି କିପରି ଏକ ମୃଦୁମନ୍ଦ ଗୁଞ୍ଜରଣ
ଆନନ୍ଦର ଗୀତ ହୋଇ ଝରିଆସେ ମୋ ପାଖକୁ
ସବୁ ପ୍ରଜାପତିମାନେ ଏକସଙ୍ଗେ
ଲେଉଟି ଆସନ୍ତି ବଗିଚାକୁ ।।

ସବୁ ଟିକି ଚଢ଼େଇମାନେ
ଅପେକ୍ଷା କରିଥାଆନ୍ତି
ତମ ଦୁହିଁଙ୍କର ଆସିବାକୁ ।।

ଝର୍କା କଡ଼ର କ୍ରୋଟନ ଗଛରେ
କୃଷ୍ଣଚୂଡ଼ାରେ
ଚମ୍ପା ଗଛରେ
ଶବ୍ଦର ହାଟ ବସିଯାଏ ସକାଳ ହେଲେ ।।

ତମେ ଦୁହେଁ ଆସିଲେ ତ
ସବୁ ଲାଗେ ଚିତ୍ରମୟ
ଘର ପୂରିଯାଏ
ଗପରେ, ଗୀତରେ
କ୍ୟାରାମ ଖେଳରେ
ଡ୍ରଇଂ ଖାତା ଭରିଯାଏ
ରଙ୍ଗବେରଙ୍ଗ ଚିତ୍ରରେ ।।

ପୁଣି କେତେବେଳେ
ଘର ଭାଙ୍ଗିପଡ଼େ
ତମ ଦୁହିଁଙ୍କର
ମହାଭାରତ ଯୁଦ୍ଧରେ
କାନ୍ଦରେ, ଲୁହରେ
କଳିଗୋଳରେ ।।

ତମ ଦୁହିଁଙ୍କର ଆସିବା ଯେମିତି ସୂର୍ଯ୍ୟୋଦୟ
ତମ ଦୁହିଁଙ୍କର ଆସିବା ଯେମିତି
ଖାଲି ଚିତ୍ରମୟ ।।

ତମ ଦୁହିଁଙ୍କର ଆସିବା ଖବର
ଜଣାପଡେ ଫୁଲ ଫୁଟିବାରୁ
ଚଢ଼େଇମାନଙ୍କର ଗୀତ ଗାଇବାରୁ
ଗଙ୍ଗଶିଉଳିର ମିଠା ମିଠା ବାସ୍ନାରୁ ।।

•

## ବହୁଦିନ ପରେ ବାଲିଆପାଳ

ଆକାଶ ଏଠି ନଇଁପଡିଥାଏ ଆଲିଙ୍ଗନର ମୁଦ୍ରାରେ
ସବୁଜ ଧାନ ବିଲ ଉପରେ ।

ଶିଶିର ଧୁଆ ଧାନକେଣ୍ଡା ପବନରେ ପହଁରି ପହଁରି
ସ୍ୱପ୍ନ ଦେଖୁଥାଏ
ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତର ଗେରୁଆ ଖରାର ଲଗ୍ନରେ ।।

ମୋତେ କିଏ ଡାକିଆଣିଛି ଏଠାକୁ
ଲଙ୍କାଆମ୍ବ ପଣସର ବିସ୍ତୀର୍ଣ୍ଣ ଶ୍ୟାମଳ ଉପତ୍ୟକାକୁ
ଏଇ ବାଲିଆପାଳକୁ ।

ଧାନବିଲ ଛୁଇଁ ଫେରିଯାଉଥିବା
ସୁଗନ୍ଧିତ ପବନର ଇଲାକାକୁ ।।

କିଏ ମୋତେ ଡାକିଆଣିଛି ଏଠାକୁ
ଚକୁଳିପିଠାର ବାସ୍ନାର ପୃଥିବୀକୁ;
ମୋର ସୁଗନ୍ଧିତ ଶୈଶବକୁ;
ମୋର ଅତୀତକୁ;
ମୋର ସୁକୁମାର ପିଲାଦିନକୁ;
ବହୁଦିନ ପରେ ଏଇ ବାଲିଆପାଳକୁ ?

ଅଚାନକ ମନେପଡ଼େ ସବୁ କଥା
ମାମାର ଚକୁଳିପିଠା,
କଳମଶାଗର ବାସ୍ନା;
ଖରାଛୁଟିର ଖୁସିବାସିର ଗାଆଁ
ମୁଁ କେବଳ କ୍ଲାନ୍ତ ବାଟୋଇଟେ ଆଜି
ଘଡ଼ିଏ ଯିବି କି ବସି
ମୋ ଗାଆଁର ସ୍ମୃତିର ଛାଇରେ ।।

•

## ଧାନକେଣ୍ଡାରେ ସୂର୍ଯ୍ୟୋଦୟ

ଏବେ ମୋର ଚାରିପାଖେ
ସକାଳର ନିଃଶ୍ୱାସ ପ୍ରଶ୍ୱାସ
ମହମହ ବାସେ ।
ଭିଜା ଭିଜା ପବନରେ
ଧାନକେଣ୍ଡା ମୁଣ୍ଡ ନାଡ଼େ
ସୁକୁମାର ଲଳିତ ରାଗିଣୀଟିଏ
ଫିଟିପଡ଼େ ଧାନ କ୍ଷେତରେ
ନଈପଠାରେ
କାକର ବୁନ୍ଦାରେ
ନିର୍ଜନ ମନରେ ।।

ଦୂବଘାସଟିଏ ମଧ୍ୟ
ସୂର୍ଯ୍ୟୋଦୟର ପୁଲକରେ ପୁଲକିତ ।।

ମେଘମୟ ମୁହୂର୍ତ୍ତକୁ, ଚେତନାକୁ
ସଙ୍ଗୀତର ବିଳାସରେ ଭରିଦିଏ ସୂର୍ଯ୍ୟୋଦୟ
ଧାନକେଣ୍ଡାରେ ସୂର୍ଯ୍ୟୋଦୟ ।।

•

## ଥରେ ଖାଲି ଡାକିଦେଲେ

ମୋତେ ଆଜି ନେଇ ଯାରେ ତୋ ପାଖକୁ
ଗାଁ ମୋର ସୁନା ଗାଆଁ ମୋର
ଗଛରେ ଗଛରେ ତୋର ମହୁବସା
କୁମ୍ଭାଟୁଆ, ଡାହୁକର ଡାକ
ଥରେ ଖାଲି ଛୁଇଁଦେଲେ
ଚେତନାକୁ ମୋର

ଯେତେ ଯେତେ ଦରମଳା ପତ୍ର ମୋ ଭିତରେ
ପୁଣି ଥରେ କଅଁଳି ଉଠିବ ।।

ମୋତେ ଖାଲି ଥରୁଟିଏ ଡାକିଦେଲେ
ବୋହିଯିବି ନଈ ହୋଇ
ତୋରି ପାଖରେ ।
ଯେଉଁଠାରେ ଶୀତ ସକାଳରେ
ଧାନକେଣ୍ଡା ମୁହଁ ଘଷେ
କାକର ଦେହରେ
ଚିତ୍ରିତ ଚଇତ୍ର ଦେହେ ପ୍ରତି ଖରାବେଳେ
ନୀରବରେ କୃଷ୍ଣଚୂଡ଼ା ଝରେ ।।

ମୁଁ ଖେଳିବି ଦୋଳି କେତେ
ଶିଆଳିନଟାରେ ।
ଗଛରୁ ପାରିବି ଡାବ
ପାରିଆ ଝାମ୍ପୁଡ଼ି, ନୀର, କ୍ଷୀରଙ୍କ ମେଳରେ ।।

ମୋତେ ଥରେ ଛୁଇଁଦେଲେ
ପ୍ରଗଲ୍‌ଭା ନଈଟି ପରି ସ୍ପନ୍ଦିତ ମୁଁ ହୋଇଯିବି
ମୋ ନିଜ ଭିତରେ
କମ୍ପିତ ପୃଥିବୀ ମୋର ଭରିଯିବ ଉଲ୍ଲାସରେ
ଭଲପାଇବାରେ ।।

ଝୋଟି ଓ ମୁରୁଜ ଅଙ୍କା ଗାଁ ମୋର
କୁମ୍ଭାଟୁଆ, ଡାହୁକର ସ୍ମୃତିସିକ୍ତ ଗାଁ
ମୋତେ ଖାଲି ଥରୁଟିଏ ଡାକିଦେଲେ
କେହି ନ ଜାଣିଲା ପରି
କେହି ନ ଶୁଣିଲା ପରି
ସ୍ନେହ ଅଶ୍ରୁ ଅପାସୋରା
ଶୋକ ସବୁ ମୋ ମନରେ ପଡ଼ିବ ଉତୁରି ।।

ମୋ ମନର ଶୁଖିଲା ଡାଳରେ
ଆଉଥରେ ପତ୍ର କଅଁଳିବ
ନୀଳ ସାବ୍‌ଜା ପତ୍ର ତଳେ
ସୁକୁମାରୀ ଫୁଲଟିଏ
ପାଖୁଡ଼ା ମେଲିବ ।
ଡାକିଦେଲେ ଥରଟିଏ ଖାଲି ଡାକିଦେଲେ ।

•

## ମୋର ନୁହେଁ

ଘରର ଖିଲାଣ
କାରୁକାର୍ଯ୍ୟ ଖଚିତ ଅତୀତ
ଗଛଭର୍ତ୍ତି ଗଙ୍ଗଶିଉଳି ଫୁଲ
କିଛି ମୋର ନୁହେଁ ।।

କେମିତି ଗୋଟାଏ ଅଦ୍ଭୁତ ସ୍ୱପ୍ନରେ
ବିଭୋର ଥିଲି ଏତେ ଦିନ ।।

କେମିତି ଗୋଟିଏ ଅଦ୍ଭୁତ ଇଚ୍ଛାରେ
ମଗ୍ନଥିଲି ଏତେ ଦିନ ।।

'ମୋର' 'ମୋର' କହି
ସାରା ଜୀବନ କଷ୍ଟ ପାଇଛି
ସାରା ସମୟ ଅଣ୍ଡାଳି ହୋଇଛି
ଅନ୍ଧାରରେ ।।

ଜାଣିଛି ମୁଁ
କିଛି ମୋର ନୁହେଁ
ଦି'ଦିନର କୁଣିଆ ମୁଁ ଏଇ ଘରେ
ଏଇ ପୃଥିବୀରେ ।।

•

# ମୋତେ କେହି ଡାକିନ ଏଥର

ପୂଜା ଛୁଟିରେ ଗାଁକୁ ଯିବାକୁ
ମୋତେ କେହି ଡାକିନ ଏଥର
ପ୍ରତିଥର ଛୁଟି ହେଲେ ଗାଁ ମନେପଡ଼େ ବାରମ୍ବାର ।।

ପୂଜା ଛୁଟିର ଗାଆଁ
ଅନେକ ସ୍ମୃତିର
ଅନେକ ସୁନ୍ଦର ।।

କେମିତି ଦିଶୁଥିବା ଗାଁ ମୁହଁ
ସ୍ୱପ୍ନରେ ବିହ୍ୱଳ
କଞ୍ଚାଘାସର ଗନ୍ଧରେ ଓଦା ସରସର ।।

ବାରି ଚାରିକଡ଼େ
ନଚେଇଥିବ ଡଙ୍କ
ଜହ୍ନିଫୁଲ କଖାରୁଫୁଲର ।।

ଇଛିମାଲି ଜାଗାରେ ଫଳିଥିବ କାକୁଡି ଜହ୍ନି
ଅସମାଧିତ କେତେ ପୁରୁଣା ବାଦବିବାଦର ।।

ଗଇଶ ଫୁଲ ବି ତ ଫୁଟିଥିବ ଏ ଋତୁରେ
ଏଇ ଅଗଣରେ
ଦଲୁଆ ପୋଖରୀ ଆଡ଼ିରେ ।।

ଅଗଣ ସଞ୍ଜରେ
ଜହ୍ନ ଖସିପଡୁଥିବ
କୁନି କୁନି ସୁକୁମାର
ହାତ ଆଞ୍ଜୁଳାରେ ।।

ବସା ବାନ୍ଧିଥିବା ଚଢ଼େଇଟି
ଉଡ଼ିଯାଇଥିବ ଦିନେ
ଛାଡ଼ିଦେଇ ସଂସାର ତା କୁଟା ଓ କାଠିର
ଅଧା ରହିଯାଇଥିବା ବିସ୍ମୃତ ସ୍ୱପ୍ନର ।।

ଗାଁର ଶେଷ ମୁଣ୍ଡରେ
ଶ୍ମଶାନର କୋକେଇ ବାଉଁଶ
ଫଟା ତକିଆର ତୂଳା
ଅତୀତର ପାଦଚିହ୍ନ
ଉଚ୍ଛ୍ୱସିତ ଜୀବନ ମୃତ୍ୟୁର ।।

ରକ୍ତଚାପରେ କଷ୍ଟ ପାଉଥିବା
ଏଇ ରାଜଧାନୀ
ତାର ଆକାଶ ଆଉ ନଈ
କିଛି ଜମା ଭଲଲାଗେ ନାହିଁ ।।

•

# ପୃଷ୍ଠବନ୍ଧ

ନିବିଡ଼ତର ଉପଲବ୍ଧିର ମୋର ପ୍ରିୟ ଜନ୍ମଭୂମି, ପ୍ରିୟ ଗାଁ, କେତେ ଜନ୍ମରୁ ଯେମିତି ତୋ ସହିତ ପରିଚୟ ମୋର । ତୋର ଗୋଧୂଳିର ରଙ୍ଗ, ଫୁଲଫୁଟା ସକାଳର ଶୁଭ୍ରତା, ବାଉଁଶ ବଣରୁ ଛପି ଛପି ଆସୁଥିବା ଅନ୍ଧାର ସବୁ ମୋତେ ମୁଗ୍ଧ କରିଛି । ଦଳୁଆ ପୋଖରୀ ଆଡ଼ିରେ, ଗଇଣ ଫୁଲର ଗନ୍ଧ ଭିତରେ ମୁଁ ହଜିଯାଇଛି । ତୋରି ଭିତରେ ଲୁଚି ରହିଛି ଅସୁରୁଣୀ ବୁଢ଼ୀର ଗପ ଶୁଣା ମୋର ମୁଗ୍ଧ ଶୈଶବ । ମୂଷା ଗାତରେ ଭଙ୍ଗା ଦାନ୍ତ ପକାଇବାର ଦିନ । ସ୍କୁଲ ନ ଯାଇ ତୋରି ନଳିତା ବଣରେ ଲୁଚିବାର ଭୟ ଏବଂ ଆନନ୍ଦର ସ୍ୱପ୍ନ ଏବଂ ସ୍ମୃତିରେ ଗୁନ୍ଥାଗୁନ୍ଥି ସମୟ । ତୁ ତ ଆଉ ସାଧାରଣ ଗାଁ'ଟିଏ ନୁହଁ । ତୋର ମାଟି, ପାଣି, ପବନ ସବୁ ମନ୍ତ୍ରସିଦ୍ଧ । ତୋର ଆକାଶ ଅରୁନ୍ଧତୀ, ସ୍ୱାତୀ, ଧ୍ରୁବତାରାର ଆଲୋକରେ ଆଲୋକିତ । ସ୍ୱାତୀ ନକ୍ଷତ୍ରରେ ଭିଜି ବର୍ଷା ବିନ୍ଦୁ ଶାମୁକା ଗର୍ଭରେ ମୁକ୍ତା ହେଲାପରି, ମୋର ଶୈଶବ ଦିନେ କବିତାରେ କବିତାରେ ଅଙ୍କୁରିତ ହୋଇଯାଇଥିଲା ।

ମୁଁ ଜାଣେ ସବୁ ଗତାନୁଗତିକତାକୁ ଠେଲି ଦେଇ ତୋ ପାଖକୁ ମୁଁ ଯିବି । ତୋର ଡାକରେ କି ମୋହିନୀ ଶକ୍ତି ଅଛି କେଜାଣି ସବୁ ବନ୍ଧବାଡ଼ ଭାଙ୍ଗିଯିବ ନିମିଷକରେ । ସେତେବେଳେ କେଉଁ ଏକ ନୂତନ ସକାଳର ଜନ୍ମ ହେଉଥିବ ପୃଥିବୀରେ । କୁଆଁତାରା ଆକାଶରୁ ନିଭି ନଥିବ । ଦୂର ମନ୍ଦିରରୁ ଘଣ୍ଟା ଧ୍ୱନି ଭାସିଆସୁଥିବ । ଭୋର ମହୁମାଛି ଗୁଣୁଗୁଣୁ ହେଉଥିବ ବଗିଚାରେ । ସମ୍ଭାବନାରେ ବିଶ୍ୱାସରେ ହସି ହସି ପାଛୋଟି ନେବ ଭୋର । ମନ୍ତ୍ରପରି ଧ୍ୱନିତ ହୋଇ ଉଠିବ ପବିତ୍ର ସକାଳ । ସବୁ ଜଡ଼ତାର ନିର୍ମୋକ ଖୋଲିଯିବ ମୋ ଭିତରେ । ଆବେଗରେ ସ୍ପନ୍ଦିତ ହୋଇ ଉଠିବ ଭିତରର କୋମଳ ଅନୁଭବଟି ମୋର । କୁମ୍ଭାଟୁଆ, ଡାହୁକ,

କଇଁଳପାତିର ସମ୍ମିଳିତ କୋରସ୍‌ରେ ସୁଗନ୍ଧିତ ଭୋରମୟ ହୋଇଯିବ ଘରିଆଡ଼େ । ପରିଚିତ ପକ୍ଷୀକଣ୍ଠରେ ମୋର ପିଲାଦିନ ନାଁ ଧରି ନାନାଦି ଶବ୍ଦରେ ମୋତେ ତୁ ଡାକିବୁ ମୁଁ ଜାଣେ । ଅସଂଖ୍ୟ କାମିନୀ, ମଲ୍ଲୀ, ହେନା, ଯୂଇ ସେଇ ମୁହୂର୍ତ୍ତରେ ଏକ ସଙ୍ଗେ ଫୁଟିଯିବ ମୋ ଭିତରେ । ଆଲୁଅ, ପବନ ସମସ୍ତେ ମୋତେ ଏକ ସଙ୍ଗେ ଡାକିବେ 'ଆୟ ଆୟ' ବୋଲି । ସ୍ନେହର ସୁଗନ୍ଧିତ ହାତ ପ୍ରସାରିତ କରି ତୁ ମୋତେ ବିସ୍ମିତ କରିଦେବୁ । ଘରିଆଡ଼େ ଚିହ୍ନା ଚିହ୍ନା ଭାବ, ଗ୍ରହଣ କରିନେବାର, କୋଳେଇ ନେବାର ମୁଦ୍ରା । କି ଅହେତୁକ ମାୟାରେ, ତୁ ମୋତେ ବାରମ୍ୱାର ଡାକୁଛୁ ହାତ ପ୍ରସାରିତ କରି ସ୍ନେହ ପରି, ପ୍ରୀତି ପରି ।

ମୋର ପ୍ରିୟ ଗାଁ– ପ୍ରିୟ ଜନ୍ମଭୂମି । ଜନ୍ମଜନ୍ମାନ୍ତର ଧରି ତୋତେ ମୁଁ ଜାଣେ । ମୁଁ ସ୍ୱପ୍ନ ଦେଖେ– ଅକୁଣ୍ଠ ସମର୍ପଣର ଭାବ ମୋ ଭିତରେ । ଲଙ୍କାଆମ୍ବ, ପାନ ବରଜର ଶ୍ୟାମଳ ସବୁଜିମା ଭିତରେ ତୋର ଚିତାକୁଟା ଗାଉଁଲୀ ମୁହଁର ସରଳ ହସ ମୋତେ ଆକର୍ଷିତ କରେ ଚିରକାଳ । ଆସନ୍ତା ଜନ୍ମରେ ତୋରି କୋଳରେ ଜନ୍ମ ହେବି କବି ହୋଇ ଏଇ ତରାଟ ଓ ସୋରିଷ ଫୁଲର ଗାଁରେ । ରକ୍ତକଇଁ ଆଉ ପାଣି ଶିଉଳି ଫୁଲରେ ସାରା ପୋଖରୀ ପୂରିଯାଇଥିବ । ଧାନ ଭର୍ତ୍ତି ଅମାରରେ, ସାରା ମାଟିକାନ୍ଥରେ, ଜାତି ଜାତି ଝୋଟି ଆଉ ଚିତାର କୋଟିକମ ଭିତରେ ତୋ ମୁହଁରେ ଆନନ୍ଦର ଝଲକ ଝଲସି ଉଠୁଥିବ । ଆସନ୍ତା ଜନ୍ମପାଇଁ କେତେ ଯେ ପ୍ରସ୍ତୁତି ମୋର । ମୁଁ ପୁଣି ଫେରିଆସିବି ତୋରି କୋଳକୁ ମେଘ ହୋଇ, ବର୍ଷା ବିନ୍ଦୁ ହୋଇ ।

•

## ସାତଜନ୍ମ ବି ପର୍ଯ୍ୟାପ୍ତ ନୁହେଁ

ଶବ୍ଦର ପ୍ରତିମାଟିଏ ଗଢ଼ିବା ପାଇଁ ସାତଜନ୍ମ, ସାତଟି ମରଣ ବି ପର୍ଯ୍ୟାପ୍ତ ନୁହେଁ । ସେଥିପାଇଁ ମୁଗ୍ଧ କବି ନିର୍ବାଣକୁ ବି ତୁଚ୍ଛ କରିଦିଏ । ସେ ପ୍ରାର୍ଥନା କରେ ବାରମ୍ବାର କବି ହୋଇ ଜନ୍ମ ନେବାକୁ ପାଣି ଶିଉଳି ଫୁଟୁଥିବା ଗାଁରେ । ଯୁଗ ଯୁଗର ତପସ୍ୟା ଭିତରେ କବି ଅପେକ୍ଷା କରିଛି ହୁଏତ ଦିନେ ନା ଦିନେ, କେବେ ନା କେବେ ରହସ୍ୟମୟୀ ଶବ୍ଦର ପ୍ରତିମାଟିଏ ଶବ୍ଦହୀନ ଶବ୍ଦର ତରଙ୍ଗ ଭିତରୁ ଅଭିମନ୍ତ୍ରିତ ହୋଇ ବାହାରି ଆସିବ । କେତେ ସ୍ୱପ୍ନ କେତେ ସ୍ମୃତିକୁ ବହନ କରି ଅମୂର୍ତ୍ତ ପ୍ରତିମା ପାଲଟିଯିବ । ଠିକ୍ ସେତିକିବେଳେ ଆକାଶ ମଲ୍ଲୀ ଫୁଲରେ ନଇଁ ପଡ଼ିଥିବ । ସମସ୍ତଙ୍କ ହୃଦୟରେ ଭଲ ପାଇବାର ଝରଣା କୂଳ ଭାଙ୍ଗୁଥିବ । ସୃଷ୍ଟିର ପ୍ରଥମ ପ୍ରଭାତରୁ ବିଭୋର କବି ଉହିଁ ରହିଛି ଗଭୀର ଆବେଗରେ । ଶବ୍ଦଟିଏ ପାଇଁ ବଢ଼ାଇ ରହିଛି ହାତ ପରମ ଶ୍ରଦ୍ଧାରେ । ରାତି ରାତି ପାହି ଯାଇଛି ଶବ୍ଦ ଖୋଜାରେ । ଶାମୁକାର ସ୍ୱପ୍ନରେ ବିମୁଗ୍ଧ କବି ଶବ୍ଦର ଟୋପାଏ ମୁକ୍ତାବିନ୍ଦୁକୁ ଅପେକ୍ଷା କରି ରହିଛି କାଳ କାଳ । ସେଇ ଅମୃତ ଲଗ୍ନର ପ୍ରତୀକ୍ଷାରେ, କି ଏକ ଅଦ୍ଭୁତ ମୋହରେ ପୃଥିବୀର ସକଳ ଆଡ଼ମ୍ବର ଠାରୁ କବି ଦୂରେଇ ଆସିଛି ସ୍ୱଇଚ୍ଛାରେ । ଶବ୍ଦର ଅମୂର୍ତ୍ତ ମୂର୍ତ୍ତିଟିଏ କେତେବେଳେ ସୂର୍ଯ୍ୟାସ୍ତର ରଙ୍ଗ ହୋଇ, ମେଘର ଆସ୍ତରଣ ହୋଇ, କୁହୁଡ଼ିର ଝୁରୁଝୁରୁ ସ୍ୱପ୍ନ ହୋଇ କବିକୁ ମୁଗ୍ଧ କରିଛି । ଅନ୍ୟମନସ୍କତା ଭିତରେ, ନିଶବ୍ଦତାର ତର୍ଜନୀ ଭିତରେ ହଜିଯାଇଛି କବି । ସବୁ କବିତା କ'ଣ ଏଇ ନୀରବତା ଭିତରୁ, ନିଃଶବ୍ଦତା ଭିତରୁ ଜନ୍ମ ନିଏ ?

•

# ଏକୁଟିଆ ଟ୍ରେନ୍‌ରେ

ଭାରି ଭଲ ହେଲା
ଏକୁଟିଆ ଟ୍ରେନ୍‌ରେ
ଅସରନ୍ତି ରାସ୍ତା ପାରିହେବା ।
ଭାରି ଭଲ ହେଲା
ଏମିତି ଏକା ଏକା ବିରଳ ମୁହୂର୍ତ୍ତ ଭିତରେ
ନିଜ ସହ ଗପସପ ହେବା ।।

ଏକୁଟିଆ ମୁହୂର୍ତ୍ତ ମୁଁ
ଅସହାୟ ବିନ୍ଦୁଏ ଲୋତକ
ଯିଏ କେବେ କାନ୍ଦିନାହିଁ ଜୀବନରେ
କିପରି ବୁଝିବ ସିଏ
ମୋର ଏଇ ନିର୍ଜନତା
ମୋର ଏଇ ଏକାକୀତ୍ୱ ।।

କାଲି ସାରା ରାତି
ନିଦ ନ ଥିଲା ଆଖିରେ
ମୁଁ ଘୂରୁଛି ଅରଣ୍ୟରେ
ସମୁଦ୍ରର ବେଳାଭୂମି ପରେ
ମୁଁ ଭୀଷଣ ଆତଙ୍କିତ
ବିକଟାଳ ଟ୍ରେନ୍‌ର ଶବ୍ଦରେ ।।

ଭୂମିକମ୍ପ ହେଉଥିଲା ମୋ ଭିତରେ
ପ୍ରତି ମୁହୂର୍ତ୍ତରେ ।
ମୋତେ ଜଣାଗଲା
ମୋ ମୃତ୍ୟୁର ବେଳ ଉପଗତ
କେହି ଆତତାୟୀ ଆସି ଛପିଅଛି
ଏଇ ଟ୍ରେନ୍ ଅନ୍ଧାର ଭିତରେ ।।

କ୍ରମଶଃ ଶୁଭୁଛି ତା'ର ପାଦଶବ୍ଦ
ଅତି ନିକଟରେ ।
ଶୀତତାପ ନିୟନ୍ତ୍ରିତ
ଏକୁଟିଆ ଟ୍ରେନ୍‌ର ଏ
କୋଠରି ଭିତରେ ।
କେହି ଆସି ଯଦି ମୋର
ଗଳା ଚିପିଦିଏ
ସବୁ ଏକାକୀତ୍ୱ, ଦହଗଞ୍ଜ
ଶେଷ ହେବ ସେଇ ମୁହୂର୍ତ୍ତରେ ।।

•

## ଶବ୍ଦର ସ୍ଥାପତ୍ୟ ଭିତରେ

ମୁଁ ତ ଅପେକ୍ଷା କରିଛି ଚିରକାଳ
ଶିଶୁର ଦରୋଟି ପରି
ଝରଣାର ଅବାରିତ ଧାରା ହୋଇ
ଝରି ପଡ଼ିବ ମୋ କଲମରୁ
କେବେ ନା କେବେ
ଦିନେ ନା ଦିନେ
ଶବ୍ଦର ସ୍ଥାପତ୍ୟ ।

ସେହି ସ୍ଥାପତ୍ୟର କାରୁକାର୍ଯ୍ୟ ଭିତରେ
ମୁଁ ଦେଖିବି
ଚିର ସୁନ୍ଦର ସକାଳଟିଏ
କ୍ରମଶଃ ଓହ୍ଲାଇ ଆସୁଛି
ମୋ ଚେତନାକୁ ।।

# ଆଜି ପୁରୀରେ (୧)

କେଉଁ ମାୟା ଘେରରେ
ତୁ ବନ୍ଦୀରେ ନଟବର
ଚଢ଼େଇର ପେଟ ପରି
କୋମଳ ଓ ମୁଲାଏମ୍ ଡାକ ତୋର
କାହିଁ ଆଉ ଶୁଭୁନି କେଉଁଠି ।

କେହି କୁଆଡେ ନାହାନ୍ତି
ସବୁ ଆଜି ନିକାଞ୍ଚନ ନିକାଞ୍ଚନ
ଏପରିକି କଜଳପାତି ବି
ଆସିନାହିଁ କିଛିଦିନ ହେବ
ଆମ ବାଡ଼ି କଇଁଆ ଗଛକୁ
କିଛିଦିନ ତଳେ
ପୁରୀ କଲେଜରୁ କାମ ସାରି
ତୋ ପାଖକୁ ଗଲାବେଳେ
ଦେଖିଲି ମୁଁ
ଶ୍ରୀମନ୍ଦିର ବାଇଶି ପାହାଚ ଉପରେ
ମନମରା ହୋଇ ବସିଥିଲୁ
ମାଛିଅନ୍ଧାରରେ ।
ସନ୍ଧ୍ୟା ଆଳତି ବେଳେ
ତୁ କେମିତି ମୃଦଙ୍ଗ ହୋଇ ଗଡ଼ିଗଲୁ
ଜଗନ୍ନାଥଙ୍କର ଗୋଲ ଗୋଲ ଆଖିର ସାମ୍ନାରେ ।।

କୋଇଲି ବୈକୁଣ୍ଠର
ଶିଆଳୀ ଲତାର
ଛନ୍ଦଣି ମନ୍ଦଣି ପରି
ଭାଗ୍ୟ ତୋର ଛନ୍ଦିହୋଇ ଯାଇଥିଲା
ଆଉ କାହା ଭାଗ୍ୟ ସଙ୍ଗେ

ଅକସ୍ମାତ୍ ଚାଲିଗଲୁ
କୁଆଡେ ତୁ ନଟବର
ଅଭିମାନ କରି କା ଉପରେ ?
ସୂର୍ଯ୍ୟମୁଖୀ ଝିଅଟି ଉପରେ ।
ଆଜି ଏଇ ପୁରୀରେ
ତୋତେ ଖୋଜିବି କେଉଁଠି
କୋଇଲି ବୈକୁଣ୍ଠରେ
ନା ସମୁଦ୍ରର ଉତ୍ତାଳ ଶବ୍ଦରେ ?

•

## ଦୁର୍ଗାପୂଜାର ଦିନ

ଘରଟା ଏମିତି ଚିରକାଳ ଚୁପ୍‌ଚାପ୍ ଥିଲା
ଛୋଟ ଝିଅଟି ପରି ।
କାନ୍ଥସାରା ଫୁଲର ଚିତ୍ର
ସୂର୍ଯ୍ୟର ଚିତ୍ର
ନଈର ଚିତ୍ର ।
ଏମିତି କେତେ ନା କେତେ ଚିତ୍ର
ସେ ଆଙ୍କିଥିଲା ଚକ୍‌ଖଡ଼ିରେ ।

କେବେଠାରୁ ତା ଉପରେ
ଫିମ୍ପି ମାରିଗଲାଣି ।
ଭଙ୍ଗା ବୋତଲର ହଳଦିଆ
ନାଲିଆ ଠିପି
ଖାଲି ଦିଆସିଲି ଖୋଳ
ସ୍କୁଲ ବାରଣ୍ଡାରୁ ଗୋଟାଇ ଆଣିଥିବା
ଛୋଟ ପେନ୍‌ସିଲ୍ ଖଣ୍ଡେ
ସବୁକୁ ସେ ଲୁଚାଇ ଦେଇ ଆସିଛି
ତା ବହି ଥାକରେ ।

ତାରି ଭିତରେ ସାଇତି ରଖିଥିଲା
ତାର ସୁକୁମାର ସ୍ୱପ୍ନ ସବୁକୁ
ସମୟ ପରି ବାପା ତାର ନିରୁଦ୍ଦିଷ୍ଟ
ମାଆ ହସୁଥାଏ ତ ହସୁଥାଏ ।
କାନ୍ଦୁଥାଏ ତ କାନ୍ଦୁଥାଏ
ଘରଟା ଚିରକାଳ ଏମିତି ଚୁପ୍‌ଚାପ୍ ଥିଲା ।

ଦୁର୍ଗାପୂଜାର ଦିନ ପରି
ଭିତରେ ଭିତରେ କେମିତି ଗୋଟାଏ
ମହକି ଯାଉଥିଲା ।
ଫେରିବାକୁ ମନ କଲାଣି ଝିଅଟି ।
ସିଙ୍ଗାର ହାର କେତେ ନା କେତେ ଫୁଟୁଥିବ
ଫୁଲରେ ଡାଳ ଭାଙ୍ଗି ପଡୁଥିବ ।
ତାକୁ କେହି ଖୋଜୁ କି ନ ଖୋଜୁ
ତାକୁ କେହି ଡାକୁ କି ନ ଡାକୁ
ବହିଥାକରେ ରଖି ଆସିଥିବା
ସ୍ୱପ୍ନ ପାଖକୁ ସେ ଫେରିଯିବ ।

•

## ତୋର ଜଳମୟ ଆଙ୍ଗୁଳିରେ

ତୋର ଜଳମୟ ଆଙ୍ଗୁଳିରେ
ମୋତେ ଟିକେ ଛୁଇଁ ଦେ ଚିଲିକା
ଆଜି ଏଇ ମେଘମୟ ମୁହୂର୍ତ୍ତରେ
ଉଦ୍‌ବେଳିତ ଜଳ ତରଙ୍ଗରେ
ମୁଁ ସତେ କି ମେଘଟିଏ
କୂଳ ଲଙ୍ଘି ଆସିଥିବା ଢେଉଟିଏ
ଆକାଶରେ ଉଡୁଥିବା
ବିଭୋର ଚଢ଼େଇଟିଏ ।

ଦୂରରେ ସୋଲେରୀ ଆଉ ଭାଲେରୀର
ଚିତ୍ରପଟ
ଭାରି ଭଲ ଲାଗୁଛି ଏଇ ଖୋଲା ଆକାଶ
ହାଲୁକା ମେଘର ଛାଇ
ବିଦେଶିନୀ ଚଢ଼େଇଙ୍କ ଗୀତ ।

ବହୁଦିନ ହେଲା
ଖୋଲା ଆକାଶର ଗୀତ ଶୁଣିନାହିଁ
ଏପରି ନିବିଡ଼ ଭାବେ ।
ଆଗରୁ ଏମିତି ଚିଲିକାକୁ ଦେଖିନାହିଁ
ଏପରି ନିବିଡ଼ ଭାବେ । ।

ଚିଲିକା ଛାତିରେ ଆଜି
ଲେଖିଦେବି ମୋ ନାଁ
ଲେଖିଦେବି ସ୍ୱପ୍ନ ଖୋଜିବାକୁ
ଆସିଥିଲି ଚିଲିକାକୁ
ଜଳମୟ ଆଙ୍ଗୁଳିରେ
ମୋତେ ଟିକେ ଛୁଇଁ ଦେ ଛୁଇଁ ଦେ
ମୁଁ ଅଧିକରୁ ଅଧିକ ନିବିଡ଼ତର ହୋଇଯାଉଥାଏ ।

•

## ଆଜି ପୁରୀରେ (୨)

ତୋ କୋମଳ ମଧୁର ଭଲପାଇବା ତ
ଚାରିଆଡ଼େ ବିଛାଇ ପଡ଼ିଛି
ବର୍ଷା ଆସିଲା ମାତ୍ରେ ତାହା ଆହୁରି
କୋମଳ ଲାଗିବ ।

ବର୍ଷାରେ ଭିଜି ଭିଜି ଜଗନ୍ନାଥ
ମାଉସୀ ଘରକୁ ଯିବେ ।

ସେଠାରେ ସେ ମାଉସୀଙ୍କ ସ୍ନେହରେ
ଆହୁରି କୋମଳ ଦିଶିବେ ।

ସମୁଦ୍ର ତ ଯୋଡ଼ିଦିଏ ସମସ୍ତଙ୍କୁ
ସ୍ମୃତିକୁ ସ୍ୱପ୍ନକୁ ।
କେଉଁ ସ୍ୱପ୍ନରେ ତୁ ବିଭୋରରେ ନଟବର ?
କଲ୍ପବଟ ଡାଳରେ
ତୋ ଭଲପାଇବାଟାର ଚଢ଼େଇଟି
ଆଉ ଉଡୁନାହିଁ ।

ଏଥର ପୁରୀକୁ ଗଲାବେଳେ
ଦେଖିଲି, ତୁ ବି ଉଡ଼ିଯାଇଛୁ
କାହିଁ କେତେ ଦୂରକୁ ।
ତୋତେ ଖୋଜିବି କେଉଁଠି
ସ୍ୱର୍ଗଦ୍ୱାରରେ
ନା ସମୁଦ୍ରରେ ?

•

## ସେଦିନ ନିଶୂନ୍ ମେଘ

ସେଦିନ ନିଶୂନ୍ ମେଘ
ନଇଁ ପଡ଼ିଥିଲା
ସ୍ଫଟିକ ଧବଳ ତିସ୍ତା ଉପରକୁ ।
କାଞ୍ଚନଜଙ୍ଘା ଉପରେ
ମେଘମାନେ ଗପ କରୁଥିଲେ
ମୁଁ ଯିବା ବେଳକୁ ।

ତିବ୍‌ବତୀୟ ଆକାଶରେ
ଜହ୍ନ ନ ଥିଲା ସେଦିନ
ମେଘମାନେ ଘୂରାଘୂରି କରୁଥିଲେ
ଏପାଖ ସେପାଖ ।

'ତିସ୍ତା'ର ସର୍ବାଙ୍ଗରେ
ଶାରଦୀୟ ଉଦାସୀନତାରେ
ନଇଁ ପଡିଥିଲା ଆକୁଳ ଆକାଶ ।
ସବୁଠାରେ ରାଗ ଭୈରବୀର
ଅପୂର୍ବ ପୂର୍ବାଭାସ ।

କ୍ଳାନ୍ତିର ଭାରରେ
ନଇଁ ଯାଇଥିବା ବିବ୍ରତ ମଣିଷ ମୁଁ;
ବହୁ ସୂକ୍ଷ୍ମ ଅନୁଭବ ଭାଙ୍ଗିଯାଇଛି
ଅଜାଣତରେ କେତେବେଳେ
ଜୀବନର ରୁକ୍ଷତା ଭିତରେ ।
ନଈ କିମ୍ବା ପାହାଡ଼ ଦେଖିଲେ
ସେଇ ସୁକୁମାର ସତ୍ତା ଚେଇଁ ଉଠେ
ବେଳେବେଳେ ମୋ ଭିତରେ ।

•

## ଅନୁଗୋଳ ପାଇଁ କବିତାର ଭୂମିକା

ଅନୁଗୋଳ ଜାଣେ ନାହିଁ
ମୋର ଏକ ବ୍ୟକ୍ତିଗତ କବିତା ଆତ୍ମାରେ
ତାରି ଚିତ୍ର ମୁଁ ଆଙ୍କିଛି ।
ଆଗରୁ କେବେ ଦେଖିନଥିବା
ଅନୁଗୋଳର ଦୁକୁଦୁକିକୁ
ପ୍ରଥମ ଦେଖାରେ ମୁଁ ବାରି ପାରିଛି ।

ଶାଗୁଆ ମାଟିରେ ପାଦ ଥାପିଲା କ୍ଷଣି
ଆକାଶ ଅନାଇଥିଲା ମୋ ଆଡ଼କୁ ସୂର୍ଯ୍ୟମୁଖୀ ପରି ।
ରତ୍ନଗର୍ଭା ଅନୁଗୋଳ
ଲମ୍ବା ଲମ୍ବା ଦେବଦାରୁ

ଶାଳ ଆଉ ଶାଗୁଆନ୍
ମେଳାପୀ ଚଢ଼େଇଙ୍କ ଗୀତ ।
ମନେହେଲା ଗଛମାନେ
ଫୁଲମାନେ ଅଧିକ ଆତ୍ମୀୟ
ମଣିଷ ଅପେକ୍ଷା ।

ପକ୍ଷୀମାନେ ଅଧିକ ମେଳାପୀ
ଗାଁର କପୋତୀ ପରି ।
ମୋ କବିତା ଆତ୍ମାରେ
ଗୁଣୁଗୁଣୁ ହେଉଥା ତୁ
ଭୋର୍ ବେଳ ମହୁମାଛି ପରି ।

•

## ମୋ ଦେଶ ମୋ ଭାରତବର୍ଷ

କେଉଁଠି ମୋ ଦେଶ
ମୋ ଭାରତବର୍ଷ
ମୋ ମାଆର ଲମ୍ବିଲା ପଣତ ପରି
ସବୁଜ ଧାନକ୍ଷେତ
କେଉଁଠି ମୋ ଦେଶ
ମୋ ଭାରତବର୍ଷ ।

ଛୁଇଁଦେଲେ ମାଟିକୁ ଟିକିଏ
ଦେଖିବ କେମିତି
କି ଅପୂର୍ବ ଉନ୍ମାଦନା ଖେଳିଯିବ
ତମରି ଭିତରେ । ।

ବନ୍ଦେ ମାତରଂ ଧ୍ୱନିରେ
ଉଦ୍ଧାମ ସିଂହ, ବାଘା ଯତୀନର
ଶୋଣିତରେ ରଞ୍ଜିତ ଏ ମାଟି

ଦେଖିବ କେମିତି
ଅଭିମନ୍ତ୍ରିତ ଏଇ ମାଟିକୁ ଛୁଇଁଲେ
ଭିତରଟା ଭରିଯିବ
ବନ୍ଦେ ମାତରଂ ଧ୍ୱନିରେ ।।

କେଉଁଠି ମୋ ଦେଶ
ମୋ ଭାରତବର୍ଷ ।
ସବୁଠାରେ କ୍ଷେପଣାସ୍ତ୍ର
ସବୁଠାରେ ହୃଦୟକୁ କାଟିବାର
ମର୍ମଦାହୀ ଦୃଶ୍ୟ ।।

ମୁଁ ଖୋଜିଛି ଭାରତକୁ
ପୃଥିବୀର ପ୍ରତି ଉପାନ୍ତରେ
ନାଏଗ୍ରାରେ ଏବଂ ଟେମସ୍ ନଦୀରେ ।।
ମୋ ଦେଶ ଛପିଛି
ଭୋରବେଳା କୁମ୍ଭାଟୁଆ
କମ୍ପିତ କଣ୍ଠରେ ।।

କି ଅପୂର୍ବ ପବିତ୍ରତା ଏ ଦେଶ ମାଟିରେ
କନ୍ୟାକୁମାରୀ କିମ୍ବା
କାଞ୍ଚନଜଙ୍ଘାରେ
କୃଷ୍ଣା, କାବେରୀ ଏବଂ
ସରସ୍ୱତୀ ତୀରେ ।।

ସାରା ପୃଥିବୀରେ
ରାଣୀପରି ଝଟକୁଥାଏ
ଭାରତର ମୁହଁ
ସେ ମୁହଁରେ ବେଳେ ବେଳେ
ଭାସିଉଠେ କଳା ଛାଇ
କାହାର ସେ ଛାଇ

ମାଆର ମୁହଁରେ
ସେପରି ଭୀଷଣ ଛାଇ
ଶୋଭାପାଏ ନାହିଁ ।

ଭାରତମାତାର ମୁହଁଟିଏ
ଖୋଜିଦେବ କିଏ
ଯିଏ ଚିର ମହନୀୟା
ଅଭୟ ମୁଦ୍ରାରେ
ଭାରତର ଛାତି ତଳେ
ଏବେ ବି ବହୁଛି
ଚିର ସୁନ୍ଦର ନଈଟିଏ
ଯାହାର ପାଣି ପବନ
ଅଭିମନ୍ତ୍ରିତ ହୋଇଛି
ସ୍ୱାଧୀନତା ମନ୍ତ୍ରରେ ।।
କେଉଁଠି ମୋ ଦେଶ
ମୋ ଭାରତବର୍ଷ
ସାରା ଅବୟବ ଯା'ର ସୁଗନ୍ଧିତ
କିମ୍ବଦନ୍ତୀରେ ସୁବର୍ଣ୍ଣ ସ୍ମୃତିରେ
ତାର ଲମ୍ବା ପଣତରେ
ସେ ସମସ୍ତଙ୍କୁ ବାନ୍ଧି ଦେଇପାରେ
ସଂହତି ମନ୍ତ୍ରରେ ।।

•

## ଝିଅଟିର ମନ ଭଲ ନଥିଲା

ଝିଅଟିର ମନ ଭଲ ନଥିଲା
କେତେଦିନ ହେଲା
ଝିଅଟିର ଆଖିରେ ନିଦ ନଥିଲା
ସ୍ୱପ୍ନ ବି ନଥିଲା ।

ବହି ଥାକରେ ସେ ସ୍ୱପ୍ନ ସବୁକୁ
ଲୁଚାଇ ରଖି ଆସିଥିଲା ।

ଅନ୍ୟମନସ୍କ ହୋଇ
ସେ ଅନାଇ ରହିଥିଲା ଆକାଶକୁ
ଯେଉଁଠି ଟିକି ଚଢ଼େଇମାନେ
କୋଳାହଳରେ ମୁଖର କରି ଦେଉଥିଲେ
ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତକୁ ।

ଶୈଶବର ସ୍ମୃତି ହୋଇ
ମାଳ ମାଳ ମେଘଖଣ୍ଡ
ଭାସୁଥିଲା ଆକାଶର
ଏପାଖୁ ସେ ପାଖ
ଝିଅଟିର ମନ ଭଲ ନଥିଲା
କୁନି ଭଉଣୀ ମନେପଡୁଥିଲା ।
ପଢ଼ାଘର ସ୍କାଇଲାଇଟ୍‌ରେ
ଛୁଆ ଘରଚଟିଆଟି
ଖଣ୍ଡିଉଡ଼ା ଦେଉ ଦେଉ
ହୁଏଟ ଉଡିଯାଇଥିବ ।

ହଳଦିଆ ଗୋଲାପ କୁଣ୍ଡରେ
କଢ଼ ସବୁ ଫାଟି ସାରିଥିବ
ରୋଷେଇଘର ଅନ୍ଧାର ଭିତରେ
ମାମା ଅନ୍ଧାରକୁ ଅନାଇଥିବ
କିଟିକିଟି ଅନ୍ଧାର ଭିତରେ
ସିଏ ବି କେମିତି ଅନ୍ଧାରୁଆ
କୋଣଟିଏ ପାଲଟି ଯାଇଥିବ
ଝିଅଟିର ମନ ଭଲ ନଥିଲା ।

ତା ଆଖିରେ ନିଦ କିମ୍ବା ଲୁହ
କିଛି ବି ନଥିଲା

ବାପା ମାଆ କେବେଠାରୁ ନିରୁଦ୍ଦିଷ୍ଟ
ଝିଅଟିକୁ ସବୁ ଶୂନ୍ୟ ଲାଗୁଥିଲା
ଆଗରେ ପୂଜାଛୁଟିର ଦିନ ।
ଝିଅଟିର ମନ ଭଲ ନଥିଲା
ଝିଅଟିର ଆଖିରେ ନିଦ ନଥିଲା
ସ୍ୱପ୍ନ ବି ନଥିଲା
ବହିଥାକରେ ସ୍ୱପ୍ନ ସବୁକୁ
ସେ ଲୁଚାଇ ଆସିଥିଲା ।।

•

## ଆଜି ଏତେଦିନ ପରେ

ଆଜି ଏତେଦିନ ପରେ
ନାଲି କଇଁଟି ଫୁଟିଛି
ଦଲୁଆ ପୋଖରୀ ଭିତରେ ।
ଭାରି ଭଲ ଲାଗୁଛି ଏଇ ଗାଁ
ଘରର ଚୂନଛଡ଼ା କାନ୍ଥ
ଶିଉଳି ବୋଳା ପାଚେରି ।

ଯେଉଁ ପାଚେରି ମୋତେ
ଆଉଜାଇ ନେଇଛି କେତେଥର
ତା ଛାତିରେ
ସ୍କୁଲ ବେଳ ହେଲେ ।

ମୁଁ ଆଜି ଫେରି ଆସିଛି ମୋ ପିଲାଦିନକୁ
ମୁଁ ପିଲାଟିଏ ହୋଇଯାଇଛି ଯେମିତି
ଖଗେନ୍ଦ୍ର ମାଷ୍ଟ୍ରେ
ମହେନ୍ଦ୍ର ସାର୍
ଜଣେ ବି କେହି ନାହାନ୍ତି ଆଜି
ଭାରି ଭଲ ଲାଗେ ଗାଁ'କୁ ଆସିଲେ

ଯାହା ଯାହା ମୋର ହଜିଯାଇଛି
ଯାହା ଯାହା ମୁଁ ହଜାଇ ଦେଇଛି
ସବୁ ମିଳିଯାଏ ଏକା ସାଙ୍ଗରେ ।

କ'ଣ ଏଠି ଥାଏ ?
ଜହ୍ନ ଆଲୁଅରେ
ଦଳୁଆ ପୋଖରୀରେ ?
ମଣିଷଙ୍କ ଅଭାବୀ ମନରେ ?
କ'ଣ ଏଠି ଥାଏ ଯେ
ବହୁଦିନ ଧରି ଶୁଖୁ ନ ଥିବା
କ୍ଷତ ସବୁ ଆପେ ଆପେ
ଶୁଖିଯାଏ
କେହି ଟିକିଏ ଆଉଁଶି ଦେଲେ ।
ମୁଁ ଆସିଛି ବୋଲି
ଆଜି ଏତେଦିନ ପରେ
ନାଲି କଇଁଟିଏ ଫୁଟିଛି
ଦଳୁଆ ପୋଖରୀ ଭିତରେ ।

•

## ବଞ୍ଚିଥିବା ଯାଏ

ମୋ ଭିତରକୁ ତମେ
ଚିତ୍ରମୟ କରିଦିଅ
କୋଟିକମ କରି ଆଙ୍କିଦିଅ
ମୋ ଭିତରେ
ମୁକ୍ତାପରି ଝଲମଲ ହେଉଥିବା ସ୍ୱପ୍ନଟିଏ
ସେଇ କୋମଳ ଓ ସୁକୁମାର ସ୍ୱପ୍ନଟିକୁ
ସାଇତି ରଖିବି
ବଞ୍ଚିଥିବା ଯାଏ ।

•

## ଭଲ ପାଇବା ଚାରିଆଡ଼େ

ଭଲ ପାଇବା ତ ଚାରିଆଡ଼େ
ଏମିତି ବୁଣାବୁଣି ହୋଇ ପଡ଼ିଥାଏ
ତାକୁ ସାଉଁଟିବାକୁ ମନ କାହିଁ କାର ?
ଭଲ ପାଇବା ତ ଚାରିଆଡ଼େ
ଏମିତି ଖେଳାଇ ହୋଇଯାଇଥାଏ
ତାକୁ ଗୋଟାଇବାକୁ
ଇଚ୍ଛା କାହିଁ କାର ?
ମନ୍ଦିର ଭିତରେ ଭଗବାନ
ଭଲ ପାଇବା ତ ମଣିଷ ଭିତରେ ।

•

## ଘର (୧)

ସେଦିନ ନିଃଶବ୍ଦ ହୋଇଗଲା
ସବୁ ଶବ୍ଦ
କାଠିକୁଟାର ଘରଟିକୁ ଛାଡ଼ିଦେଇ
ମା' ପାରାଟି ଉଡ଼ିଯାଇଥିଲା ଦୂରକୁ
ଛୁଆମାନଙ୍କର ଭଙ୍ଗା ଭଙ୍ଗା
ଦରୋଟିରେ
ସମୟ ସ୍ପନ୍ଦିତ ହେଉ ନ ଥିଲା ।
ପରିତ୍ୟକ୍ତ ମନ୍ଦିରର ଆର୍ତ୍ତନାଦ ପରି
ଘରଟିର ଯାହା ନିଃଶ୍ୱାସ ଶୁଭୁଥିଲା
ଛୋଟ ଘରଟି ବାହୁନି ବାହୁନି କାନ୍ଦୁଥିଲା ।

କେତେ ପାର୍ବଣର ମୁଖର ଦିନରେ
ଖୁସିରେ ଭିଜିଯାଉଥିବା ଘରଟି,
ଗଙ୍ଗଶିଉଳି ଗନ୍ଧରେ

ସୁଗନ୍ଧିତ ହେଉଥିବା ଘରଟି
ଦୁଃଖିନୀ ମାଆଟି ପରି
ଦୁଃଖକୁ ପଣା କରି
ପିଉଥିବା ଘରଟି
ସେଦିନ ହଠାତ୍
ନିଷ୍ପନ୍ଦ ହୋଇଗଲା
ସାତପୁରୁଷର ବୁନିଆଦି ଘରଟାରେ
ଆଜି ମେଞ୍ଚା ମେଞ୍ଚା ଅନ୍ଧାର ।

•

## ବର୍ଷା ଆସିଲେ ମୋ' ଭିତରେ ପତ୍ର କଅଁଳେ

ସେଦିନ କାଗଜ ଡଙ୍ଗା ହୋଇ
ମେଘକୁ ଅନାଇଥିଲି
ବର୍ଷାରେ ପତ୍ର କଅଁଳିଲା ପରି
ମୁଁ କଅଁଳି ଉଠିଥିଲି ।

ବର୍ଷା ଆସିଲେ ମୋ ଭିତରେ ପତ୍ର କଅଁଳେ
ସବୁଜାୟିତ ହୋଇଯାଏ ମୁଁ
ଲୁହର ଗୋଟାଏ ସରୁଧାର
ଫିଟିଯାଏ ମୋ ଭିତରେ
ଲୁହ ଆଉ ସ୍ୱପ୍ନରେ
ମୁଁ ଭାଙ୍ଗିଯାଏ
ମୁଁ ତ ଲୁହଭିଜା ଶ୍ରାବଣଟିଏ
ପୁରୁଣା ସ୍ମୃତିରେ ପୋତି ହୋଇଯାଉଥାଏ ।

•

## ଗାଁ ମୋର

ମୋ ଗାଁ ତ ସାଧାରଣ ଗାଁ ନୁହେଁ
ଯାହା ମାଟି, ପାଣି ଓ ପବନ ମନ୍ତ୍ରସିଦ୍ଧ ।

ଯାହା ଆକାଶରେ ଅରୁନ୍ଧତି,
ସ୍ୱାତୀ, ଧ୍ରୁବତାରା
ଆଲୁଅରେ ଆଲୋକିତ ।
ମେଘମୟ ମୁହୂର୍ତ୍ତରେ
ଝରିପଡ଼େ ବର୍ଷା ବିନ୍ଦୁ ଅବିରତ ।

ସେଇ ମୁକ୍ତାରେ ପିଲାଦିନ ମୋର
ସୁବାସିତ ହୋଇଗଲା ଗୋଟାପଣେ
ଅରୁନ୍ଧତି ଆଲୁଅରେ
କବିତା ଲେଖିଲି କେତେ
ସ୍ୱାତୀ ନକ୍ଷତ୍ରରେ ଭିଜି
ବର୍ଷା ବିନ୍ଦୁ ଶାମୁକା ଗର୍ଭରେ
ମୁକ୍ତା ହେଲା ପରି
ମୋ କୈଶୋର ଅଙ୍କୁରିତ ହୋଇଗଲା
କବିତାରେ, ଖାଲି କବିତାରେ ।

•

## ଏଇ ଭଗ୍ନ ସମୟରେ

ସାରା ସମୟ ଏଠି ବୋମା ପଡ଼ିବା
ଆତଙ୍କରେ ଆତଙ୍କିତ ।
ଭୂମିକମ୍ପ ବିଷୟରେ
ଚାରିଆଡେ ଚର୍ଚ୍ଚା ଚାଲିଛି
ସବୁ ଭଲ ପାଇବା ଏକାଠି କରି
ଯେଉଁ ପ୍ରତିମା ମୁଁ ଗଢ଼ିଥିଲି

କାଲି ରାତିରେ କିଏ ଭାଙ୍ଗି ଦେଇଛି
ଭଙ୍ଗା ମୂର୍ତ୍ତିଟିକୁ ଗୋଟାଇଲା ବେଳେ
ରକ୍ତରେ ହାତ ଭିଜିଯାଉଛି ।

•

## କିଛି ପଚାରନି

ସବୁ ସମୟ ମୋର
ଛଡ଼ାଇ ନେଲ ।
ନିଜସ୍ୱ ସମୟ ମୋର କାହିଁ ଯେ
ମୁଁ ଧାଡ଼ିଏ ଲେଖିବି ?
ପଦଟିଏ ଗାଇବି ?
ଚିରକାଳ ତ ପଶୁପରି ବଞ୍ଚିଲ
ନିଜ ରୁଚିରେ କେବେ ବି ବଞ୍ଚିବାକୁ ଦେଲନି ।
ସବୁ କଥାର କାରଣ ଖୋଜିଲ
ଆଜି ଅନ୍ତତଃ ମୁଁ କାନ୍ଦିଲା ବେଳେ
କିଛି ପଚାରନି ।

•

## କିଏ ଶୁଣିବ ମୋ କଥା

ଏମିତି କିଏ ଅଛି ଯେ
ଶୁଣିବ ମୋ କଥା
ମୋ ଅସରନ୍ତି ସମୟର କଥା ।

ସେମାନେ ତ ତାଳଗଛ ଛାଇରେ
ମୁହଁ ପୋତି ବସିଛନ୍ତି
ଅନନ୍ତ କାଳରୁ ।
ମେଘବର୍ଷା ସବୁ ଆଜି ଏକାକାର
ସମୁଦ୍ର ଆକାଶ ନଈ ସବୁ ଆଜି ଏକାକାର

ସମସ୍ତଙ୍କ ମନ ତ ସବୁବେଳେ ଖରାପ
ମେଘୁଆ ଆକାଶ ପରି ।

ଶୈଶବ ଆସିବା ଆଗରୁ
ପିଲାମାନେ ବୟସ୍କ ହୋଇଯାନ୍ତି ହଠାତ୍ ।
ଏମିତି କିଏ ଅଛି ଯେ
ଶୁଣିବ ମୋ ଚିତ୍ରମୟ ପିଲାଦିନ କଥା ।
ଆଜି ବି ମୁଁ ସେମିତି
ଅନ୍ୟମନସ୍କ ପିଲାଟିଏ
ଟିକିଏ କଥାରେ ଯେ କାନ୍ଦି ପକାଏ
ଟିକିଏ କଥାରେ ଝରଣା ପରି ବୋହିଯାଏ ।
ଏମିତି କିଏ ଅଛି ଯେ ଶୁଣିବ ମୋ କଥା
ଅସରନ୍ତି ଶୈଶବର କଥା ।।

•

## ଏଠି ଏତେ ନିର୍ଜନତା

ନୀଳକଇଁ ପାଖୁଡ଼ା ଉପରେ
ମୃଦୁ କାକର ବିନ୍ଦୁଏ ଯେମିତି
ଏଇ ଅନୁଗୋଳ,
ପ୍ରଥମ ଦେଖାରେ
କେତେ ନଦୀ ଉପନଦୀ
କଳନାଦ କରି
ବୋହିଗଲେ ନିଃଶବ୍ଦରେ
ମୋ ଅନ୍ତଃସ୍ଥଳରେ ।।

ମୋ ଆଖପାଖରେ
କୁମ୍ଭାଟୁଆ, ଡାହୁକ, କଜଳପାତି
ମୁଖରିତ କରିଦେଲେ ସମୟକୁ
କ୍ଲାନ୍ତ ନିର୍ଜନତାକୁ ।।

ଏଠି ଏତେ ନିର୍ଜନତା
ଫୁଲ ଫୁଟିବା ଶବ୍ଦର ପ୍ରତିଧ୍ୱନି
ସବୁଠାରେ,
ନିର୍ଜନତା ମଧୁର ପୁଲକ
ହୋଇ ଓହ୍ଲାଇ ଆସିଛି
ଅନୁଗୋଳର ଏ ସବୁଜ ମାଟିରେ ।।
ମୁଁ ଆଜି ପ୍ରଥମ ଥର ପରିଣତ କରିଦେବି
ମୋର ଯେତେ ସ୍ୱପ୍ନ ଆଉ ସମ୍ଭାବନା
ସ୍ମୃତିମୟତାରେ ।।

•

## ମୁଁ ଜନ୍ମିବି କବି ହୋଇ

ମୁଁ ଜନ୍ମିବି ଏଇଠି
ଏଇ ତରାଟ ଓ ସୋରିଷ ଫୁଲର ଗାଆଁରେ
କବି ହୋଇ ।

ସାରା ପୋଖରୀ ପୂରି ଯାଇଥିବ
ରକ୍ତକଇଁ ଆଉ ପାଣିଶିଉଳି ଫୁଲରେ ।।
ଧାନ ଭର୍ତ୍ତି ଅମାରରେ
ସାରା ମାଟି କାନ୍ଥରେ
ଜାତି ଜାତି ଝୋଟି ଆଉ ଚିତା ।
ବାଡ଼ିସାରା କାକୁଡ଼ି ଜହ୍ନି
କଖାରୁ ଫୁଲ ଲତା ।
ମୁଁ ଜନ୍ମିବି ପୁଣି ଥରେ
ଆସନ୍ତା ଜନ୍ମରେ
ଏଇଠି ଏଇ ଗାଆଁରେ କବି ହୋଇ ।।
ସବୁଜ ନଡ଼ିଆ ଗଛ
ପଣସ ଓ କଦଳୀର
ବିସ୍ତୀର୍ଣ୍ଣ ପାହାଚ ।

ଗାଆଁଟାକୁ ଘେରି ଧାନବିଲ
ଧାନବିଲ ସେ ପାଖରେ ପୁରୁଣା ଶ୍ମଶାନ
ସେଇ ଶ୍ମଶାନର ବରଗଛରେ
କାହାର ସ୍ନେହମୟ ଚାହାଣିରେ
କିଏ ମୋତେ ଅପେକ୍ଷା କରୁଛି
ପ୍ରତି ପୂଜାଛୁଟିରେ ।।

ମୁଁ କେମିତି ଅପାରଗ
ଷ୍ଟେଟସର ସିମ୍ଫଲ ଭିତରେ
କେତେ ବେଶୀ ଅସହାୟ
ମୋ ନିଜ ପାଖରେ ।।

ମୁଁ ଜନ୍ମିବି ଆସନ୍ତା ଜନ୍ମରେ
ଏଇ ଗାଆଁରେ
କବି ହୋଇ
ପୁଣି ଥରେ ।।

•

## ବାଲିଆପାଳ ଜାଣେ ନାହିଁ

ବାଲିଆପାଳ ବୁଝେ ନାହିଁ ବହୁକଥା
ଏକଥା ସତ ଯେ
ଆଉ କେବେ ତା ମାଟିରେ
ପବନ ଆଉଁଶିବ ନାହିଁ
ପାଚିଲା ଧାନର ବାସ୍ନାକୁ ।

ବାଲିଆପାଳ ବୁଝେ ନାହିଁ
ହଠାତ୍ କାହିଁକି ତା ନୀଳ ଆକାଶ
ରକ୍ତବର୍ଣ୍ଣ ହୋଇଯାଏ ।
ମାଆମାନେ ଆଗପରି
ପ୍ରତିଦିନ ସଞ୍ଜବେଳେ

ଜହ୍ନକୁ ଡାକନ୍ତି ନାହିଁ ଆଗ୍ରହରେ
ଖସି ପଡ଼ିବାକୁ
କୁନି କୁନି ସୁକୁମାର
ହାତ ଆଞ୍ଜୁଳାରେ ।

ରାତି ହେଲେ
ପତର ଶବ୍ଦରେ ମନେହୁଏ
ପଥର ପଡ଼ିଲା ପରି
ଶଙ୍କା ବାଜି ଉଠେ,
କେଉଁ ଗୁପ୍ତ ପଥ ଦେଇ କିଏ ଆସେ
ଅବେଳରେ ଲୁଚି ଲୁଚି
ଲୁଟିନେବା ପାଇଁ ସୁଖ ସବୁ
ବାଳିଆପାଳର
ବାଳିଆପାଳ କିଛି ବୁଝେ ନାହିଁ ।

•

## ମନ୍ତ୍ରସିଦ୍ଧ ତନ୍ମୟତା

ମୋ ଆଖପାଖରେ ଆଜି
ମେଘ ଆଉ ମେଘ
ଡାହୁକ ଓ କୁମ୍ଭାଟୁଆ ଶବ୍ଦରେ
ଶବ୍ଦମୟ ସମୟ ।

ସୁଗନ୍ଧିତ କୋମଳତା ଘେରିଛି ଯେମିତି
ମୋ ଚାରିପାଖରେ ।
ଏଠି ଆଜି ବର୍ଷାଋତୁ
ତିବ୍‌ବତୀୟ ଆକାଶରେ
ତିସ୍ତା ନଦୀରେ
ସୁଗନ୍ଧିତ ସମୟ ମଝିରେ ।

ସବୁ ଆଜି ମେଘମୟ,
ସବୁ ଆଜି ଚିତ୍ରମୟ
ସଂପର୍କ ପରି ନିବିଡ଼ ଅରଣ୍ୟରେ,
ମୃଦୁ ମୃଦୁ ଶିହରଣ
ମଧୁର ପୁଲକ ।
ଏ କିପରି ତନ୍ମୟତା
ଏ କିପରି ତଲ୍ଲୀନତା ମୋ ଭିତରେ
ଅମୂର୍ତ୍ତ ସମୟ ଭିତରେ
ଆନନ୍ଦ ଓ ବିସ୍ମୟରେ
ଦୂରାଗତ କବି
ଆଚମ୍ବିତ ହୋଇ ଚାହିଁରହେ ।
କେଉଁଠି କେଜାଣି
ତନ୍ମୟତା
ମନ୍ତ୍ରସିଦ୍ଧ ହୋଇ
ମୋର ସାରା ଅବୟବ
ଘେରି ରହିଥାଏ ।

•

## ସବୁ ସାଇତି ରଖିବି

କଣ ଆଉ ଏଠି ଅଛି ଯେ
ସାଇତିବାକୁ ଜଉମୁଦ ଦେଇ
ସ୍ନେହମୟ ଚାହାଣି ବ୍ୟତୀତ ।

ଏଯାଏ ପଚାରି ନାହିଁ
ଏକାନ୍ତରେ
ଅନୁଗୋଳ, ତୁ ହଠାତ୍ ଡାକିଲୁ
କାହିଁକି ମୋତେ
ତୋ ପାଖକୁ

ତୋର ଖୋଲାମେଲା
ଶାଳ ଓ ଶାଗୁଆନ୍
ଐଶ୍ୱର୍ଯ୍ୟ ମଧ୍ୟକୁ । ।

ମୋର ଯେତେ ଅହଙ୍କାର
ଅନ୍ୟମନସ୍କତା
ଛଳନା ଓ କୃତ୍ରିମତା
ସବୁ ଆଜି ଫିଙ୍ଗିଦେବି
ଦୂରକୁ
ସାଦାସିଧା ମଣିଷ ମୁଁ
ନିହାତି ସରଳ
ମୁଁ କ୍ରମଶଃ ବ୍ୟାପିଯାଉଅଛି
ଦିଗ ଦିଗନ୍ତରେ
ଆକାଶର ନୀଳିମା ଭିତରେ
ଏଇ ଅନୁଗୋଳର
ପାହାଡ଼ ଓ ପୁଲାଙ୍ଗ
ବନରେ । ।

•

## ସେଦିନ କବିତା ଲେଖା ବନ୍ଦ ହୋଇଯିବ

କାଦମ୍ବିନୀର ଜୀବନ ପରି
ସମୟ ତା ବାଟରେ
ବୋହିଯିବ ।

ସୂର୍ଯ୍ୟାସ୍ତ, ସୂର୍ଯ୍ୟୋଦୟ
ସବୁ ଏକାପରି
ସବୁ ଗତାନୁଗତିକ
ବ୍ୟତିକ୍ରମହୀନ ମନେହେବ ।

ନିଛାଟିଆ ଜୀବନର କଥା
ଭାବିବାକୁ
ମୋ ଭିତରେ
ଏତେ ଟିକେ ସମୟ ନ ଥିବ ।

ଭିତରେ ବାହାରେ
ପରିପୂର୍ଣ୍ଣ ସଂସାରୀ
ଲୋକଟେ ହୋଇ;
ଝିଅ ବାହାଘର କିମ୍ବା
ଇଟା ଆଉ କଂକ୍ରିଟର
ଘରଟିଏ ତୋଳିବା
ଭିତରେ;
କବିତା ଲେଖା
ସେଇଦିନ
ବନ୍ଦ ହୋଇଯିବ । ।

•

## ଦିଲ୍ଲୀ

ଚଳମାନ ଜୀବନର ଜଳଛବି
ଧୂଆଁଛନ୍ନ ଧୂଆଁଳିଆ ଦିଲ୍ଲୀର ଆକାଶ ।
କେତେ ଇତିହାସ
ଗର୍ଭିତ ଓ ଲୁକ୍‌କାୟିତ
ଦିଲ୍ଲୀର ଏ ରାଜପଥ ଧାରେ
ଆଜି ବି ସେ ଲୁହଦାଗ ଶୁଖି ନାହିଁ
ଆଜି ମଧ୍ୟ ଦିଲ୍ଲୀର ଆକାଶ ।

ଚିର ବିସ୍ମୟରେ
ଧୂଆଁଳିଆ ଧୂଆଁଳିଆ
ମନ୍ଦିର, ମସ୍‌ଜିଦ୍, ଗିର୍ଜା

ସବୁ ଏକାକାର
ସବୁକୁ ଗର୍ଭିତ କରି
ନିଜର ଭିତରେ ।
କେତେ ବେଶୀ ନିର୍ବିକାର ହୋଇ
ଅନାଇଛ
ଯେତେଥର ଦେଖାହୁଏ ସବୁବେଳେ
ମୋତେ ସେ ଦେଖାଏ
ଚଳମାନ ଜୀବନର ଜଳଛବି
ଇତିହାସ ଚିର ବିସ୍ମୟର ।

•

## କାହିଁକି ବସିଛ

କାହିଁକି ବସିଛ
ମୁହଁଢାକି ଅନ୍ଧାରରେ
ଅନନ୍ତ କାଳରୁ ।

କହିବ ତ ରଖିଯିବି
ସୁବର୍ଣ୍ଣ ସ୍ମୃତିରୁ କିଛି
ସ୍ୱପ୍ନରୁ ବି କିଛି
ଆସନ୍ତା ସମୟ ପାଇଁ ।।

ମିଠା ମିଠା ବାସୁଥିବା
ସଂପର୍କର ଚାରାଗଛଟିକୁ ପୋତିଦେବି
ତମ ସୁବାସିତ ଅଗଣାରେ
ହଳଦୀବସନ୍ତ ପରି ଦେଖାଯାଉଥିବା
ଭଲ ପାଇବାର ପକ୍ଷୀଟିକୁ
କହିଦେବି ବସା ବାନ୍ଧିବାକୁ
ଶୋଇବାଘରର ସ୍କାଇଲାଇଟ୍‌ରେ ।।

କାହିଁକି ବସିଛ ମୁହଁଜାକି ଅନ୍ଧାରରେ
ଆଜି କିମ୍ବା କାଲି
ବୋମା ପଡ଼ିବା ପୂର୍ବରୁ
ଜୀବନକୁ ସଜାଇନିଅ
ଗଙ୍ଗଶିଉଳିରେ ।।

•

## ବୋମା ବି ପାଲଟିଯିବ ଫୁଲଟିଏ

ଆକାଶର ଚିତ୍ରିତ ଛାତିରେ ଅଙ୍କା
ବିସ୍ତୀର୍ଣ୍ଣ ଧାନର କ୍ଷେତ
ଧାଡ଼ି ଧାଡ଼ି ମହୁଲ ଓ କରଞ୍ଜ ଫୁଲର ବାସ୍ନା
ଲମ୍ବା ଲମ୍ବା ତାଳ ଆଉ ନଡ଼ିଆର
ସବୁଜ ପାହାଚ ।।

ତାରି ଭିତରେ
ସରଳ ଗାଉଁଲି ମୁହଁଟିଏ
ଓଡ଼ିଶାର ମୁହଁ
ଯିଏ ନିତି ଡିବିରି ଆଲୁଅ ତଳେ
ଭାଗବତ ପଢୁଥାଏ,
ସୂତାକୁ ରଙ୍ଗେଇ
ସ୍ୱପ୍ନଠୁ ସୁନ୍ଦର କରି
ସମ୍ବଲପୁରୀ ଶାଢ଼ିରେ
ତା ଇଛାକୁ ରଙ୍ଗ ଦେଉଥାଏ ।
ବେଳେ ବେଳେ
ଖରାବେଳେ ଧାନକ୍ଷେତ ପରି
ଅତିବେଶୀ ଉଦାସ ଓ ଏକୁଟିଆ

ସବୁ ଅନଟନ ଅଭାବକୁ
ପଣା କରି ପିଇ ଦେଉଥାଏ ।

ଯଦି କେବେ ଆସ ତମେ ଓଡ଼ିଶାକୁ
ଦେଖିବ କେମିତି
ଆକାଶ ନଇଁ ପଡ଼ିଥାଏ
ଆଲିଙ୍ଗନର ମୁଦ୍ରାରେ
ସବୁଜ ଧାନବିଲ ଉପରେ ।

ଭାବକୁ ନିକଟ ହୋଇ ଈଶ୍ୱର ଆସନ୍ତି,
ସାକ୍ଷୀ ଦେବା ପାଇଁ
ଭକ୍ତର ଡାକରେ ।

ଝୋଟି ଓ ମୁରୁଜ ଅଙ୍କା
ମଗୁଶିର ଗୁରୁବାର
ଶିଆଳିନଟାର ଡୋର
ସବୁଠାରେ ଓଡ଼ିଶାର ଅନ୍ତଃସ୍ୱର
ସବୁଠାରେ ଓଡ଼ିଶାର ମୁଗ୍ଧ ଉଚ୍ଚାରଣ ।
ମୁଁ ଭଲପାଏ ଓଡ଼ିଶାକୁ
ମାଆ ପରି ମହମହ ବାସେ ତାର ଦେହ
ସେ ବାସ୍ନାରୁ ବାରିହୁଏ
ଘେନାଘେନି ଭାବର ବଳୟ ।
ମୁଁ ତ ସାଇତି ରଖିଛି ପିଲାଦିନୁଁ
ମୋ ଚେତନାରେ
ଫକୀରମୋହନ ଆଉ ଗଙ୍ଗାଧର କବିତାର
ଉଜ୍ଜ୍ୱଳ ଅକ୍ଷର ।

ମୁଁ ଭଲପାଏ ମଣିଷଙ୍କୁ
ଇଚ୍ଛାହୁଏ ବଢ଼ାଇ ଦିଅନ୍ତି ହାତ
ବିଶ୍ୱାସର ହାତ
ମଣିଷ ପାଖକୁ ।

ଫୁଲ ତୋରଣରେ ଯଦି ବୋମାଟିଏ ଖଞ୍ଜିଦିଅ
ଟୁକୁରା ଟୁକୁରା କରି ହତ୍ୟା କରିବାକୁ
ଓଡ଼ିଶା ଆତ୍ମାକୁ
ନିମିଷକେ ସେଇ ବୋମା
ପରିଣତ ହୋଇଯିବ ଫୁଲରେ
ସହୃଦୟତାରେ
ଏଇ ଓଡ଼ିଶାରେ ।

•

## କାଳଜୟୀ କବିତାର ଧାଡ଼ି

ଆଜିଠାରୁ କେତେ ବର୍ଷ ହେବ
ମନେ ନାହିଁ
ଜଣେ କବିଙ୍କୁ ମୁଁ ଭେଟିଥିଲି
ଆଜିଠାରୁ
କେତେ ଯୁଗ ହେବ ଜାଣେ ନାହିଁ
ଜଣେ ସମଧର୍ମୀଙ୍କୁ ମୁଁ
ଜାଣିଥିଲି ।

କବି କବି ଲାଗୁଥିଲେ
କବିତା ପଢ଼ିଲା ବେଳେ
ଚେହେରାରେ ଝଲସୁଥିଲା
ଅଶ୍ରୁମୟ ବିନ୍ଦୁଟିଏ
ଅଶ୍ରୁ ନୁହେଁ
କାଳଜୟୀ କବିତାର
ଧାଡ଼ିଟିଏ ।

•

# ଯୋଡ଼ାଶଙ୍ଖରେ ନୁହେଁ

ଯୋଡ଼ାଶଙ୍ଖରେ ନୁହେଁ
ରେଢ଼ାଖୋଲ
ଜଙ୍ଗଲ ଭିତରେ
କବିତାରେ ବଞ୍ଚିଥିଲା
ବେଢ଼ଙ୍ଗ ପିଲାଟିଏ ।

ପାହାଡ଼ୀ ମଣିଷ ଆଉ
ଜଙ୍ଗଲର ତାଳପତ୍ର ଛତା ତଳେ
କଣ ସେ ଲେଖୁଥିଲା
କାଳି ନା ରକ୍ତରେ ।

ଆଜିଠାରୁ କେତେ ଶହ ବର୍ଷ ହେବ
ମନେ ନାହିଁ ।
ଗଛ ସହ, ପତ୍ର ସହ
କଥା କହୁଥିଲା
ମାଟିକୁ ଆଙ୍କୁଡ଼ି ଧରି
ଶୋଇଥିବା ବେଳେ
ସ୍ୱପ୍ନ ଦେଖି
ହସୁଥିଲା, କାନ୍ଦୁଥିଲା ।

ଅନ୍ୟମନସ୍କ ହୋଇ କେତେବେଳେ
ସାଙ୍ଗସାଥୀଠାରୁ
ଏକୁଟିଆ ଏକୁଟିଆ ବୁଲୁଥିଲା ।
ମେଘକୁ ଡାକୁଥିଲା ଆ’ ବୋଲି
ବର୍ଷାକୁ କହୁଥିଲା ରହ ବୋଲି ।
ଯୋଡ଼ାଶଙ୍ଖରେ ନୁହେଁ
ରେଢାଖୋଲ ଜଙ୍ଗଲ ଭିତରେ
କବିତାରେ କବିତାରେ
ବଞ୍ଚୁଥିଲା ବେଢ଼ଙ୍ଗ ପିଲାଟିଏ ।

•

## ମୁଁ ତ ଅଧିକ କିଛି ଚାହିଁନଥିଲି

ମୁଁ ଏମିତି କଣ କଲି ଯେ
ସେଇ ଛୋଟ ଇଚ୍ଛାଟିକୁ
ପାଦରେ ଦଳିଦେଇ
ନଷ୍ଟ କରିଦେଲ
ମୁଁ ତ ସ୍ନେହକାଙ୍ଗାଳ ମଣିଷଟିଏ
କେଉଁଠି ଟିକିଏ ସ୍ନେହର ଛୁଆଁ ପାଇଲେ
ବିଲେଇ ପରି ପାଦରେ
ଛନ୍ଦି ଯାଏ ।

ଦୁଃଖଭିଜା ଗଛଟିଏ ପରି
ମୁଁ ଭିତରେ ଭିତରେ ଖାଲି
କରତି ଯାଉଥାଏଁ
ଭାବିଥିଲି,
ପଦ୍ମପାଖୁଡ଼ାର ହାତ ଯୋଡ଼ି
ପୁଅ ମୋର ଜହ୍ନକୁ ଡାକିବ
ଆ ଆ ବୋଲି
ଜହ୍ନ ଆଲୁଅରେ ଶୋଇ ଶୋଇ
ଗୀତ ଗାଇବ କେତେ ନା କେତେ ଗୀତ ।

ଆଜି କିନ୍ତୁ ଜହ୍ନ ନୁହେଁ
ତାରା ନୁହେଁ
ସେ ଯେମିତି ଅନ୍ୟ କେଉଁ ଗ୍ରହର
ଆଉ ଜଣେ କିଏ
ମୁଁ ଖାଲି ଏତିକି ଚାହିଁଥିଲି
ଅଧିକ କିଛି ଚାହିଁନଥିଲି ।

•

# ଆ ମୋ ଛାଇକୁ ଆ

ଏଇ ଟିକିଏ ଛାଇ ତ
ମୋ ଶୈଶବକୁ
ସୁଗନ୍ଧରେ ଭରି ଦେଇଥିଲା
ଧମନୀର ପ୍ରତି ରକ୍ତକଣିକାରେ
ସ୍ୱପ୍ନର ଚାରାଗଛଟିକୁ
ଆଦରରେ ପୋତି ଦେଇଥିଲା ।

ବରଗଛ ଓହଳରେ ଶିରାଳ ହାତକୁ
ତାର ପ୍ରସାରିତ କରି
ବାରମ୍ବାର ଡାକୁଛି ସେ
ଆ ମୋ ଛାଇକୁ ଆ ।
ଖରାର ତରବାରିରେ
କେତେ ଆଉ ଲହୁଲୁହାଣ
ହେଉଥିବୁ ?
ମୋରି ଛାଇରେ ତୋ
ଶୈଶବର ଗନ୍ଧ
ମୋର ପ୍ରତିଟି ସବୁଜ ପତ୍ରରେ
ତୋରି ସକାଳର ସୁନାଝରା ଛାଇ
ସାରା ଦେହରେ ଯେ ମୋର
ଏନ୍ତୁଡି ଘରର ଉଷ୍ମ ଉଦ୍ବେଗ ।

ଖରାର ତରବାରିରେ
କେତେ ଆଉ ଲହୁଲୁହାଣ
ହେଉଥିବୁ
ଆ ମୋ ଛାଇକୁ ଆ
ଆଉ କିଛି ସମୟ ପରେ
ଛାଇ ନଥିବ
ଗଛ ବି ନଥିବ

ଝରାପତ୍ରରେ ଗଛ ମୂଳ
ପୋତି ପଡ଼ିଥିବ
କେତେ ଆଉ ଏମିତି
ଏକଲା ଚାଲିବୁ
ଆ ମୋ ଛାଇକୁ ଆ ।

•

## ଶୁଣିଲି ମୋତେ ଖୋଜୁଥିଲ

ମୁଁ ତ ନଥିଲି ମୋ ସ୍ଥାନରେ
ମୁଁ ବି ନଥିଲି ମୋ ରହିବା ଜାଗାରେ ।
ମୁଁ ଏମିତି ହଜିଯାଏଁ ବେଳେ
ମୁଁ ଏମିତି ଘୂରିହୁଏଁ
ପୃଥିବୀର ଉପାନ୍ତରୁ
ଅନ୍ୟ ଉପାନ୍ତରେ
ମୋ ନିଜ ସଂପର୍କରେ
ନିଜେ ଜାଣେ ନାହିଁ
ମୋ ନିଜ ରହିବା ଖବର
ମୋତେ ଜଣା ନାହିଁ
ଶୁଣି ମୋତେ ତମେ ଭାରି ଖୋଜୁଥିଲ
ଖୋଜି ଖୋଜି ଫେରିଯାଇଥିଲ
ସେଦିନ ବି ସେମିତି ସେମାନେ
ମୋତେ ଖୋଜି ଫେରି ଯାଇଥିବେ
ମୁଁ ନଥିଲି ମୋ ସ୍ଥାନରେ
ମୁଁ ବି ନଥିଲି ମୋ ରହିବା ଜାଗାରେ
ଖାଲି ଯାହା ରକ୍ତ ଝରେ
ଆଙ୍ଗୁଠିଟା କଟିଗଲା ପରେ ।

•

## ଭଡ଼ାଘର

କେମିତି ସବୁ କଣ ହୋଇଗଲା
ପୂଜାଛୁଟିରେ ଘରକୁ ଯିବାବେଳେ
ଗୋଲାପ ଚାରା ନେବା ପାଇଁ
ସାନ ଭଉଣୀ କହିଥିଲା ।
ଘର କାହିଁ ତାର
କେଉଁଠି ରଖିବ ଫୁଲକୁଣ୍ଡ ?
ଘର ତ ଭୂମିକମ୍ପରେ
ନିଶ୍ଚିହ୍ନ ହୋଇଗଲା ସେଦିନ
ଛୁଟି ହେଲେ କେଉଁଠିକି ଫେରିବ ?
ଭଡ଼ା ଘରକୁ ?
ଯେଉଁଠି ନା ସୂର୍ଯ୍ୟ ପଡୁଥିବ
ନା ଜହ୍ନ ?
ଭଡ଼ାଘରର ଅନ୍ଧାର ଭିତରେ
ସେ କେମିତି ବଞ୍ଚିବ ?

•

## ଶବ୍ଦଟିଏ ଖସିଗଲେ ଅଜାଣତେ

ମୋତେ କିଏ ଖୋଜୁଥିବ ?
ଭାବୁଥିବ ମୁଁ ହୁଏତ ପୂଜାଛୁଟିରେ ଆସି
ଫେରି ଯାଇଥିବି
ପୁଣି ସେହି ପୋଡ଼ା ସହରକୁ ।
ଯେଉଁଠାରେ କଅଁଳ କେରାଏ ଘାସ
ଖୋଜିଲେ ବି ମିଳେ ନାହିଁ ।

ଯେଉଁଠାରେ
ଶବ୍ଦଟିଏ ଖସିଗଲେ ଅଜାଣତେ
ବୋମା ପରି ବିସ୍ଫୋରିତ ହୁଏ ।

ଶବ୍ଦର ଭଙ୍ଗାରୁଜା ଟୁକୁରାକୁ
ସାରା ସମୟ ମୁଁ ଯୋଡୁଥାଏ
ସବୁ ସ୍ୱପ୍ନକୁ ଚହଲାଇ ଦିଏ
ଶବ୍ଦ କେଇଟି ।

ମୁଁ ଜାଣିଛି
ମୋତେ ନିଶ୍ଚେ ଖୋଜୁଥିବ
କେହି ନା କେହି ଆସି
ପୂଜା ଛୁଟିରେ
ପୁଣି ସେହି ପୋଡ଼ା ସହରରେ ।

•

## ଚିରକାଳ ଏମିତି

ଚିରକାଳ ଏମିତି ତାଳପତ୍ର କଟା ହୋଇ
ଭୟାନକ ଦିଶୁଥିବା
ଗଛଟିଏ ମୁଁ
କେତେବେଳେ ମୋର କୋମଳ ପତ୍ରକୁ
ଗୋଡ଼ରେ ଦଳି ଦେଇଛ ତ
ଆଉ କେତେବେଳେ
ମୋ ଛାତିକୁ ଦୁଇଫାଳ କରି
ଚିରି ଦେଇଛ
ଆସୁରିକ ଆନନ୍ଦରେ ।

କେଶ ଧରି ଭରପୂର ସଭାରେ ତ
କେତେବେଳେ
ତମସା ତୀରରେ
ବିସର୍ଜିତା ଦେବୀ ପରି
ଫିଙ୍ଗି ଦେଇଛ ।

ମୁଁ ତ ଜାଣିସାରିଲିଣି ବହୁଦିନୁ
ଏଇ ଏକାକୀତ୍ୱ ଆଉ
ଶୂନ୍ୟତା ଭିତରେ
ଘାରିହେବି ସାରାଟା ଜୀବନ ।
ଚିରଦିନ ବିସର୍ଜିତା
ଅପମାନ ଜର୍ଜରିତା ନାରୀଟିଏ
ଚିରକାଳ ।

•

## ବୟସ୍କ ହୋଇଯାଉଛି

ମୁଁ କ୍ରମଶଃ ବୟସ୍କ ହୋଇଯାଉଛି
ସବୁ ସତର୍କତା ସତ୍ତ୍ୱେ
କେଶ ମଧ୍ୟ ପାଚି ଆସିଲାଣି ।

କବିତା ଆସରରେ
ସଭାପତିତ୍ୱର ଆସନରେ
ଅଳଙ୍କୃତ ହେବ କବି
କବିତା ବଦଳରେ
ଉପଦେଶ ଲୋଡ଼ା ହେବ ।

ଏବେ ବୋଧେ ବେଶୀ ବେଶୀ
ଏକୁଟିଆ ଭାବି ଘାରିଦେବ ଜୀବନକୁ
କଥାବାର୍ତ୍ତା ଚାଲିଚଳନରେ
କିପରି ବୟସ୍କ ବୟସ୍କ ଭାବ
ଛାଇଯିବ ।

କବି ଯଦି ସମୟକୁ
ଅଟକାଇ ପାରୁଥାନ୍ତା
ନିଜ ଖିଆଲରେ
ଏତେ କିଛି ଯନ୍ତ୍ରଣା ନଥାନ୍ତା
ଜୀବନରେ ।

•

# କବି ତମେ ଜୀବନର କବି

ନିଛାଟିଆ ଧୂ ଧୂ ଖରାବେଳ
କପୋତୀର କାନ୍ଦିବାର ବେଳ
ବରପାଲିର ଗାଉଁଲି ସକାଳ
ଅବା କେତେବେଳେ ଧାଡ଼ିବାନ୍ଧି ସ୍କୁଲ ପିଲାଙ୍କର
''ସତ୍ୟ ପଥେ ଧର୍ମ ପଥେ
ଘେନି ଯାଅ ମୋତେ''
ପ୍ରାର୍ଥନାର ଉଚ୍ଚାରଣ ।

କେଉଁଠାରେ ତମ ବୁଢ଼ାରଜା
ହୀରାକୁଦ, ବର୍ଷା ଏବଂ
ବସନ୍ତ କବିତାର
ଲଳିତ ଝଙ୍କାର ତ ଆଉ କେଉଁଠାରେ
ତମ ନିଖୁଣ ହାତର ସ୍ୱର
ବଗିଚାରେ, ଗଛରେ, ଫୁଲରେ,
କବିତ୍ୱର ଅମୂର୍ତ୍ତ ଅକ୍ଷର ।

ହେ ଦରଦୀ କବି ତମେ ଜୀବନର କବି
ବରପାଲି ପବିତ୍ର ମାଟିରେ
ଆଙ୍କିଗଲ ଯେତେ ଯେତେ ଛବି
ସବୁ ଆଜି ତମରି ସ୍ମୃତିରେ ସ୍ମୃତିମୟ
ମେଘମୟ
ଅଧା ରହିଯାଇଥିବ କେତେ ସ୍ୱପ୍ନ
କେତେ ସ୍ମୃତି
ଭାଷାହୀନ ଭାଷା କେତେ
ଶବ୍ଦହୀନ ଶବ୍ଦ କେତେ
ଆଛନ୍ନ ଆବେଗଭରା
କବି ହୃଦୟର
କେତେ ମୁଗ୍ଧ ଅନୁଭୂତି ।



# ଅପେକ୍ଷା କରିଥାଏଁ

ଏଇ ଦେଖ
କେତେ ନିଷ୍ପାପ ଏକ
ସୁକୁମାର ଶିଶୁ ପରି
ଆଜିର ସକାଳ ।

ଦୂର ଗଛ ଡାଳରେ
କୁମ୍ଭାଟୁଆ
ନିର୍ବାକ୍ ହୋଇଯାଇଛି
ଅଥଚ ସେ ଡାକରେ
ମୋ ଭିତରର ସବୁ କବାଟ ଯେମିତି
ଖୋଲିଯାଏ ଆପେ ଆପେ
ତାରି ଡାକକୁ ଚିରକାଳ
ଅପେକ୍ଷା କରିଥାଏଁ ।

•

# କବି ଛଡ଼ା ଆଉ କିଏ ସ୍ୱପ୍ନ ଦେଖିପାରେ

ବସୁନ୍ଧରା, କବି ଛଡ଼ା ଏତେ କିଏ
ସ୍ୱପ୍ନ ଦେଖିପାରେ
ଭୋକ ଓପାସରେ ।

କବି ଦିନେ ଭାବିଥିଲା
ଏ ଭାରତ ହୋଇଯିବ
ସୁନାର ଭାରତ ।

ସୋରିଷ ଓ ନିମ୍ବଫୁଲ ମହକରେ
ଅନ୍ଧ ମହୁମାଛି
ବାଟ ଭୁଲିଯିବ ।

ସ୍ନିଗ୍ଧ, ଶ୍ୟାମଳ ଦେହରେ
କେମିତି ଯେ ଏତେ ବଡ଼ ଅନ୍ଧାରୁଆ
ଫାଟଟିଏ ସୃଷ୍ଟି ହେଲା ଜାଣେ ନାହିଁ ।
ନିରୁପାୟତାରେ
ଆଜି ଛାତି ଫାଟିଯାଏ ।

ଏ କେଉଁ ଭାରତବର୍ଷ
ଖାଲି ଯାହା କେତୋଟି ଗାରର
ରେଖାଙ୍କିତ ମାନଚିତ୍ର ।
ଆମେରିକା, ରୁଷିଆର
ପରମାଣୁ ଯୁଦ୍ଧଠାରୁ
ଆମର ଏ ଗୃହଯୁଦ୍ଧ ଭାରି ଭୟଙ୍କର ।

ରାସ୍ତାରେ ରାସ୍ତାରେ ରକ୍ତ
ଧର୍ମ ଆଜି ବିଡ଼ମ୍ବିତ ।
ମନ୍ଦିର ଓ ମସଜିଦ୍
ଭରିଯାଏ ବାରୁଦ ଗନ୍ଧରେ ।

ଏତେବେଳେ କବି ଛଡ଼ା ଆଉ କିଏ
ବିଶ୍ୱାସର ବସୁନ୍ଧରା
ସୃଷ୍ଟି କରିପାରେ
ସବୁଜ ବିଶ୍ୱାସ ହେବ ଅଙ୍କୁରିତ
ମଣିଷ ମନରେ ।
ମଣିଷର ଜୟଗାନ
ଜୀବନର ଜୟଗାନ
ଶୁଣାଯିବ
ମନ୍ଦିର ଓ ମସ୍‌ଜିଦ୍ ଭିତରେ ।
କବି ଛଡ଼ା ଆଉ କିଏ
ସ୍ୱପ୍ନ ଦେଖିପାରେ ।

•

# ରହ ବର୍ଷା ରହ

ରହ ବର୍ଷା ରହ
ମୁଁ ତ ବହୁଦିନୁ ଆସିଲିଣି
ସହରକୁ
ଛାଡି ଗାଁ ମାଟି
ଦେଖିନାହିଁ ମୋ ପ୍ରିୟ ପରିଚିତ
ଗାଁ ଲୋକ ମୁହଁ
ରହ ବର୍ଷା ରହ ।

ତୁ ତ ମନଇଚ୍ଛା ବର୍ଷୁଥିବୁ
ବିଲରେ, ମୋ ମାମାର
ସମାଧି ଉପରେ ।
ତୁ ତ ମନଇଚ୍ଛା ବର୍ଷୁଥିବୁ
ସେଇ ଏକାଣିଆ ମହୁଲ ଗଛ
ମୂଳରେ ପୋତା ହୋଇଥିବା
ବାପାଙ୍କର ଅସ୍ଥି ଉପରେ ।

ରହ ବର୍ଷା ରହ
ରାସ୍ତାଘାଟରେ ଆଜି
ପାଣି ସୁଅ ଏକାକାର
ମୁଁ କେମିତି ଯିବି ଆଜି
ଏମିତି ବର୍ଷାରେ
ଦେଖିବାକୁ ଚିର ପ୍ରିୟ ପରିଚିତ
ଗାଁ ଲୋକ ମୁହଁ ।

•

## ନହେଲେ ବି

ଆଜି ଯାଏ ଯେତେ ଯେତେ
ନଈକୁ ମୁଁ ଭେଟିଛି
ସେ ସାଳନ୍ଦୀ ହେଉ ବା
ସୁବର୍ଣ୍ଣରେଖା
ସେ ମହାନଦୀ ହେଉ
ଅବା ମହାନନ୍ଦା
ସବୁକୁ ଏକାଠି କରି
କବିତା ବହିଟିଏ ହେବ
ନିଜ ହସ୍ତାକ୍ଷରର
ବ୍ଲକ୍ ରହିବ
ପ୍ରତି ପୃଷ୍ଠାରେ
ନହେଲେ ବି
ପ୍ରଥମ ପୃଷ୍ଠାରେ ।

•

## ମଣିଷକୁ ଭଲପାଏ

ମଣିଷକୁ ଭଲପାଏ ବୋଲି
ବଞ୍ଚିବାକୁ ଚାହେଁ ଚିରକାଳ
ମଣିଷ ଭିତରେ
ଜହ୍ନକୁ ଯିବା ଅପେକ୍ଷା
ମଣିଷ ପାଖକୁ ଯିବା ଢେର୍ ଭଲ ।
ଭଲ ପାଇବାର ହାତ
ଲମ୍ବି ଆସେ ବାରମ୍ବାର
ମଣିଷ ସାମ୍ନାରେ
ସେଥିପାଇଁ ବଞ୍ଚିବାକୁ ଇଚ୍ଛାହୁଏ
ଏତେ ଦୁଃଖ ପରେ ।

•

## ତୁ ରହିଲୁ ଯାହା ଅପେକ୍ଷାରେ

ତୁ ରହିଲୁ ଯାହା ଅପେକ୍ଷାରେ
ସେ ଆସିବ ମାର୍ଗଶିର
ଗୁରୁବାର ଝୋଟି ମୁରୁଜରେ
ଲକ୍ଷ୍ମୀପାଦ ପକାଇ ତାହାର
ସେ ବାନ୍ଧି ରଖିବ
ଦେଖିବୁ ତୁ
କେମିତି ସେ
ଗଢ଼ିଦେଇ ସମସ୍ତଙ୍କୁ
କୋମଳ ମଧୁରତାର
ଭଲ ପାଇବାରେ ।

•

## ତୁମରି ବିଷଣ୍ଣ ହାତ

ତୁମ ସମ୍ପର୍କରେ
କିଛି ଲେଖିବାକୁ ଗଲାବେଳେ
ବିଷଣ୍ଣ ହାତର ସ୍ପର୍ଶ
ମୋ ସତ୍ତାକୁ ଆଲୋଡ଼ିତ କରେ
ବର୍ଷା ହୁଏ ଘନଘୋର ବର୍ଷା
ମୋ ଆହତ ଶବ୍ଦଙ୍କ ରକ୍ତରେ
ରଙ୍ଗିନ ହୁଏ ଆକାଶ
ବାଲିଆପାଳର
ଦିଗ୍‌ବଳୟ ଛାଇଯାଏ
ଲୁହର ବର୍ଷାରେ
ତୁମେ ତ ରହିଛ ଘେରି
ମୋରି ଆତ୍ମାରେ
ଶୈଶବ ସ୍ମୃତିରେ ।

•

## ବଣକୁ ଯିବୁନି ବାବୁ

ତୁ ତ ଜିଦ୍ କଲୁ ବଣକୁ ଯିବାକୁ
ରୋହିତାଶ୍ୱ
ବଣର ବୀଭତ୍ସ ରୂପ
ଜାଳିଦେବ ଶୈଶବକୁ ତୋର
ତୁ ତ ଜିଦ୍ କଲୁ
ଦେଖିବାକୁ
ସତ୍ୟର ଚେହେରା
ଯେତେ ମନାକଲି ତୋତେ
ବଣକୁ ଯାଆନା ବାବୁ
ଏମିତି ରାତିରେ
ଜଳିଗଲା ସୁକୁମାର ପଦ୍ମବନ ମୋର
ସବୁ ସୁକୁମାର ଶବ୍ଦ ନାମ ରୋହିତାଶ୍ୱ
କିଶୋର ବୟସର ବ୍ୟାକୁଳତାର
ନାମ ମଧ୍ୟ ରୋହିତାଶ୍ୱ
କାହିଁକି ତୁ ବାରମ୍ବାର ଜିଦ୍ କରୁ
ଦେଖିବାକୁ ସତ୍ୟର ଚେହେରା
କାହିଁକି ତୁ ବାରମ୍ବାର ଜିଦ୍ କରୁ
ଯିବା ପାଇଁ ଶ୍ମଶାନକୁ
ଘମାଘୋଟ ଅନ୍ଧାର ଭିତରେ
ସୁରକ୍ଷିତ ପଦ୍ମବନ ମୋର
ଜଳିଯିବ ଜାଣିଥିଲେ
କେବେ ତୋତେ ଦେଖାଇ
ନଥାନ୍ତି ସତ୍ୟର ସ୍ୱରୂପ ।
ତୁ କାହିଁକି ଜିଦ୍ କରୁ ବାବୁ
ବଣକୁ ଯିବାକୁ
ଘମାଘୋଟ ଅନ୍ଧାର ରାତିରେ ।

•

## କେବଳ କବିତା ପାଇଁ

ଚାରିଆଡ଼େ ମହକି ଉଠୁଛି
କସ୍ତୁରୀ ବାସ୍ନାରେ
ଗୋଧୂଳିର ରଙ୍ଗ ସହ
ଅସୁମାରି ରଙ୍ଗ ମିଶି
ଶବ୍ଦର ପ୍ରତିମାଟିଏ ଅଙ୍କା ହୋଇ ସାରିଥାଏ
ମୋ ମନର କାନ୍‌ଭାସ୍ ଉପରେ ।
ମୁଁ କେମିତି ଅଙ୍ଗୀକାର
କରିନିଏଁ ସମୟକୁ
ଯେତେ ଯେତେ ଅସୁନ୍ଦରତାକୁ,
କବିତାର ମୁହୂର୍ତ୍ତ ଭିତରେ ।

•

## କବି ଋଷି ଜଗନ୍ନାଥ ପାଣି

ଚୁପ୍‌ଚାପ୍ କବିଟିଏ ନୀରବରେ
ଲେଖିଥିଲା ଜୀବନର କଥା
ଗାଇଥିଲା ଜୀବନର ଗୀତ
ତାଳପତ୍ର ଲେଖନୀରେ ।
ନୀରବ ନିଶ୍ଚଳ ମୁଦ୍ରାରେ ଆଙ୍କିଥିଲା ଜୀବନର ଛବି
ଧ୍ୟାନମଗ୍ନ ଋଷିପରି
ନଳାଙ୍ଗର ନୀରବିତ
ଅମୃତ ଲଗ୍ନରେ ।
କେତେ କେତେ ଅଙ୍କୁରିତ ମୁହୂର୍ତ୍ତରେ
କେତେ ଡାହୁକ ଓ କପୋତର
ଗମ୍ଭୀରିଆ କୁହାଟରେ
ଗଢ଼ି ଦେଇଥିଲା ଏକ ବିଶ୍ୱାସର ବସୁନ୍ଧରା

ଶବ୍ଦରେ, ବ୍ରହ୍ମରେ
ସ୍ନେହସିକ୍ତ କାକର ବିନ୍ଦୁରେ ।

'ନଳାଙ୍ଗ'ର ନୁଆଁଣିଆ ଚାଳଘର
ଡିବିର ଆଲୁଅ ତଳେ
ଅଧାଲେଖା ରହିଯାଇଥିବ ତାଳପତ୍ର ପାଣ୍ଡୁଲିପି
କେତେ ସ୍ୱପ୍ନ କେତେ ସ୍ମୃତି
ଭାଷାହୀନ ଭାଷା କେତେ
ଶବ୍ଦହୀନ ଶବ୍ଦ କେତେ
ଅଧା ରହି ଯାଇଥିବ
ଆଚ୍ଛନ୍ନ ଆବେଗଭରା କବି ହୃଦୟରେ
କେତେ ମୁଗ୍ଧ ଅନୁଭୂତି ।

•

## ମନା କର ନାହିଁ

ବହୁ ବର୍ଷ ପରେ
ଆଜି ଭାରି ଇଚ୍ଛା ହୁଏ
ଚାଲ ଦୁହେଁ ସାଙ୍ଗହୋଇ ପୁରୀ ଯିବା
ଚୁପ୍‌ଚାପ୍ ମନ୍ଦିର ବେଢ଼ାରେ
କିମ୍ବା କୋଇଲି ବୈକୁଣ୍ଠରେ ବସି
ନିଜ ସହ ଗପସପ ହେବା ।
ପୁରୀର ସମୁଦ୍ର କୂଳ, ଝାଉଁବଣ
ଦୁଃଖ ପରି ଦିଗ୍‌ବଳୟ
ସରି ଆସୁଥିବା ଆୟୁଷ ପରି
ଭଙ୍ଗା ଭଙ୍ଗା ଢେଉ ସମୁଦ୍ରର
ଅନ୍ତତଃ ଘଡ଼ିକ ପାଇଁ ଭୁଲିଯିବା
କୋଳାହଳ
ଗହଳିଆ ସଂପର୍କର ଭିଡ଼

କେବେ ବି ଯାଇନ ତୁମେ ମୋ ସହିତ
ଖରାରେ କିମ୍ବା ବର୍ଷାରେ
ସୁଗନ୍ଧିତ ଅରଣ୍ୟ ଭିତରେ
ଚାଲିବାକୁ ସ୍ୱପ୍ନରେ ସ୍ୱପ୍ନରେ ।

ତୁମେ କିଛି ଜାଣିପାରନାହିଁ
ଅହର୍ନିଶି ମୋ ଭିତରେ
ଶୂନ୍‌ଶାନ୍‌ ନଈଟିଏ ଯାଉଥାଏ ବହି
ଅନ୍ତତଃ ଆଜିକ ପାଇଁ
ମନା କର ନାହିଁ ।

•

## ଏଥର ଗାଆଁରେ

ଏଥର ଗାଆଁକୁ ଗଲାବେଳେ
ପକ୍ଷୀମାନେ ବୋଧହୁଏ ଶୋଇପଡ଼ିଥିଲେ
ମୋ ଯିବା ଖବର ହୁଏତ
ଆଗରୁ ସେମାନେ ଜାଣି ବି ନଥିଲେ ।

ହଳଦୀ ବଣରେ
ବିହ୍ୱଳ ମହୁମାଛିମାନେ
ଖାଲି ଯାହା ଏପାଖ ସେପାଖ ହୋଇ
ଉଡ଼ି ବୁଲୁଥିଲେ ।
ଗାଆଁରେ ପହଞ୍ଚିଲା ବେଳେ
ମୁହଁସଞ୍ଜ ହୋଇ ସାରିଥିଲା
ଚଉଁରା ମୂଳ ମହକି ଉଠୁଥିଲା
ସଳିତା ବାସ୍ନାରେ ।
ଦୁଆର ବନ୍ଧରୁ ସଲଜ୍ଜ ମୁହଁଟିଏ
ଉଙ୍କି ମାରି ଫେରିଯାଉଥିଲା

ହାବୁକାଏ ସତେଜ ଫୁଲର ବାସ୍ନା
ଛୁଇଁ ଦେଇଗଲା ମୋର ଚେତନାକୁ
ଚିହ୍ନିଲି ମୁଁ ପାଖ ଗାଆଁର ସେ ଝିଅ
ଆମ ଘର ଲକ୍ଷ୍ମୀ ।
ତାର ପଦ୍ମପାଦର ପାହୁଲ ପକାଇ
ଆସିଛି ସେ ଏ ଘରକୁ ଲକ୍ଷ୍ମୀ ବୋହୂ ହୋଇ ।

ତାର କୋକନଦ କରତଳ
କାମିନୀ ପତ୍ର ପରି ନମ୍ର ଉଜ୍ଜ୍ୱଳ ଆଖି
ବିଶ୍ୱାସର ବସୁନ୍ଧରାକୁ
ବାନ୍ଧି ରଖିଛି ସତେ କି ।

ତା'ରି ପାଇଁ
ପ୍ରତିଟି ସକାଳ ହୋଇଯାଏ ମାଙ୍ଗଳିକ
ପଦ୍ମଗନ୍ଧରେ ସୁଗନ୍ଧିତ ପ୍ରତିଟି ମୁହୂର୍ତ୍ତ
ପ୍ରତିଟି ସୂର୍ଯ୍ୟାସ୍ତ ହୁଏ ଶ୍ଳୋକମୟ
ଐଶ୍ୱର୍ଯ୍ୟ ମଣ୍ଡିତ ।

ଏଥର ଘର ଲାଗିଲା ସ୍ୱର୍ଗପରି
ଗାଆଁ ତ ଚିରଦିନ ମଗୁଶିର
ଗୁରୁବାର ପରି
କ୍ରମଶଃ ମୁଁ ହଜିଯାଉଥିଲି
ଅଖଣ୍ଡ ନୀରବତାରେ
ଭାଷାହୀନ ଭାଷାରେ
ଏଥର ଗାଆଁରେ
ମୋତେ ଲାଗିଲା ଯେମିତି ମୁଁ ପହଞ୍ଚି ଯାଇଛି
କେଉଁ ଉଦ୍‌ବେଗହୀନ ରାଜ୍ୟରେ ।

•

## ଏମିତି ଗୋଟିଏ ଗୋଟିଏ ଦିନ

ଏମିତି ଗୋଟିଏ ଗୋଟିଏ ଦିନ
ସୁନାର ଝରଣାଟିଏ ଫିଟିଯାଇ
ଭିତରର ସବୁ ବନ୍ଧବାଡ଼
ଭାଙ୍ଗି ଦେଉଥାଏ ।
ଚାଲୁଚାଲୁ ସ୍ୱପ୍ନରେ ସ୍ୱପ୍ନରେ
ଅଚାନକ ଭଲ ପାଇବା ସହିତ
ଭେଟ ହୋଇଯାଏ ।
ଏମିତି ଗୋଟିଏ ଗୋଟିଏ ଦିନ
ନା ଥାଏ କବିତାର ଉଚ୍ଚାରଣ
ନା ଥାଏ ସ୍ମୃତିର ମନ୍ଥନ
ନିଃଶବ୍ଦରେ ନିଃଶବ୍ଦରେ
କିଛି ଗୋଟେ ଭାଙ୍ଗିଯାଉଥାଏ
ହଳଦୀ ବଣରେ ବିଭୋର ଚଢ଼େଇଟିଏ
ଶାବକ ଚଂଚୁରେ
ଆହାର ଦେବାର ଦୃଶ୍ୟ
ମୁଗ୍ଧ କରିଦିଏ ।
ଏମିତି ଗୋଟିଏ ଗୋଟିଏ ଦିନ
ଭାଙ୍ଗିଯିବା
ଯୋଡ଼ିଯିବା
ମଧୁର କମ୍ପନ ।

•

## ମାଟିକୁ ଛୁଇଁଲା ବେଳେ

ଆଜି ଏତେଦିନ ପରେ
ମାଟିକୁ ଛୁଇଁଲା ବେଳେ
ନଈକୁ ଛୁଇଁଲା ବେଳେ

କିଛି ଗୋଟେ ଭାଙ୍ଗିଯାଉଥିଲା
ମୋ ଭିତରେ
ନିଃଶବ୍ଦରେ ।
ଏ ମାଟି ତ ବାଲିଆପାଳର ମାଟି
ମୋ ପିତୃପୁରୁଷଙ୍କ ମାଟି
ଏ ମାଟିର ଗନ୍ଧ ଯେ
ମୋ ଶୈଶବର ଗନ୍ଧ
ମୁଁ ତ ବହୁବାର ବିଭୋର ହୋଇଛି
ଏ ମାଟି ଗନ୍ଧରେ
ପ୍ରଥମ ବର୍ଷାର ବିନ୍ଦୁ
ଏ ମାଟିକୁ ଓଦା କଲାବେଳେ ।

କେମିତି ମୁଁ ବନ୍ଧା ଦେବି
ମୋ ଶୈଶବକୁ
ବାଲିଆପାଳକୁ ।

•

## ଶବ୍ଦର ପ୍ରତିମା

ଶବ୍ଦର ବିନ୍ଦୁଟି ପାଇଁ
ମୁଁ ତ ଅପେକ୍ଷା କରିଛି ଚିରକାଳ
ଚାହିଁ ରହିଛି ଆକାଶକୁ
କାନ ଡେରିଛି ଫୁଲ ଫୁଟିବାର ଶବ୍ଦକୁ
ଖାଲି ଶବ୍ଦଟିଏ ପାଇଁ
ରାତି ରାତି ପାହିଯାଇଛି
ଅନିଦ୍ରାରେ ।

କେବେ ସେଇ ସ୍ୱାତୀଲଗ୍ନ
ମୁଁ ତ ଶାମୁକା ହୋଇ

ଆଁ କରିଛି ପାଟି
ଶବ୍ଦର ମୁକ୍ତାବିନ୍ଦୁଟିଏ
ଖସି ପଡ଼ିବ ଶୂନ୍ୟରୁ
ଗର୍ଭିତ ହୋଇଯିବ ସମୟ
ମୁକ୍ତାରେ
ଶବ୍ଦ ପ୍ରତିମାରେ ।

ଅନନ୍ତ ସମୟ ଧରି
ମୁଁ ତ ଅପେକ୍ଷା କରିଛି
ଦିନେ ନା ଦିନେ
କେବେ ନା କେବେ
ଅମୃତ ଲଗ୍ନରେ
ଶବ୍ଦ ରୂପାନ୍ତର ହେବ ପ୍ରତିମାରେ ।

•

## ସମୟ ସରିଯିବା ଆଗରୁ

ସମୟ ସରିଯିବା ଆଗରୁ
ଆସ, ସାଙ୍ଗହୋଇ ଯିବା ଟ୍ରେନ୍‌ରେ
କିଛି ପଚାରିବ ନାହିଁ, କୁଆଡେ ଯିବ ।

ଟ୍ରେନ୍ ଝର୍କାଦେଇ
ପଶିଆସିବ ଗାଆଁର ବାସ୍ନା, ନିଃଶବ୍ଦ ଶିଶିର ବିନ୍ଦୁ
ରକ୍ତପଦ୍ମର ପୋଖରୀ,
ଗାଆଁରାସ୍ତାର ସିଲ୍‌ହଟ୍
ତମେ ସ୍ୱପ୍ନ ଭିତରୁ ଜାଗିଉଠି ପଚାରିବ
ଏତେ ଶୀଘ୍ର ଗାଆଁ ଆସିଗଲା ।

ଦେଖ, ଚାରିଆଡ଼େ କେମିତି
ଶୈଶବର ବାସ୍ନା, ଜହ୍ନର ଶୋଭାଯାତ୍ରା
ଆଗରେ ଷ୍ଟେସନ୍,
ଏଇଠି ଓହ୍ଲାଇଯିବା ।

ଅକସ୍ମାତ୍ କେଉଁ ଦେବୀଙ୍କର ହାତ କିମ୍ବା ଗୋଡ଼
କଟିଗଲା ଅନ୍ଧାରରେ
କାହା ହୃଦୟର ଏଇ ରକ୍ତଦାଗ ଟ୍ରେନ୍‌ର କାଚରେ ।

ଆଜି ଆଉ ଗାଆଁକୁ ଯିବାନି
ଟ୍ରେନ୍ ଝର୍କାରୁ ଗାଆଁକୁ ଦେଖିବା
ସମୟ ସରିଯିବା ଆଗରୁ ଆସ ସାଙ୍ଗହୋଇ ଯିବା ।

•

## ଘର (୨)

ମୋର ଘରଟିଏ ଥାଆନ୍ତା କି
ସ୍ୱପ୍ନପରି କାରୁକାର୍ଯ୍ୟମୟ
ଆଉ ସୁନ୍ଦର ।

ଘର ସାମ୍ନାରେ ଥାଆନ୍ତା
ସ୍ୱପ୍ନର ବଗିଚାଟିଏ
ଗୁଣୁଗୁଣୁ ମହୁମାଛି
ହଳଦୀବସନ୍ତ
ବଉଳ ଗଛରୁ
ଝରୁଥିବା ମହୁରୁ
ମହୁଫେଣାଟିଏ ତିଆରି ହେଉଥାଆନ୍ତା
ସେଇ ଏକୁଟିଆ ମୁହୂର୍ତ୍ତରେ
କବିତାର ହାତ ଧରି
ନେଇଆସନ୍ତି ପଢ଼ାଘରକୁ
ଆହା ଘରଟିଏ ଥାଆନ୍ତା କି ମୋର
ସ୍ୱପ୍ନପରି କାରୁକାର୍ଯ୍ୟମୟ ଆଉ ସୁନ୍ଦର ।

ଘରର ଅଗଣାରେ
ମଲ୍ଲୀଗଛଟିଏ ଥାଆନ୍ତା
ପ୍ରତି ମୁହୂର୍ତ୍ତରେ ମନେ ପକାଇ ଦିଅନ୍ତା
ଭଲପାଇବାର ସୁନେଲି ନଈଟି
ଏଇ ପାଖରେ କେଉଁଠି ବହିଯାଉଛି ।

ମନେପକାଇ ଦିଅନ୍ତା
ବୁଝାମଣା ଆଉ ଘେନାଘେନି ଭାବର
ସ୍ନିଗ୍ଧ ଆକାଶଟିଏ ଘରଟିକୁ ଛୁଇଁଦେଇ ଯାଉଛି ।

ଶୈଶବର ସହଚରୀ ସିଙ୍ଗାରହାର, ମାଳତୀ
ନିଜକୁ ଅଜାଡ଼ି ଦିଅନ୍ତା ସକାଳ ହେଲେ
ପିଲାମାନଙ୍କର ମେଳା ବସୁଥା'ନ୍ତା
ତା' ମୂଳରେ ।
ଆହା, ଘରଟିଏ ଥାଆନ୍ତା କି ସ୍ୱପ୍ନପରି କାରୁକାର୍ଯ୍ୟମୟ
ଆଉ ସୁନ୍ଦର ।

•

## ଭୋର ସ୍ୱପ୍ନ

ଭୋର ସ୍ୱପ୍ନ କ'ଣ ସତ ?
ଆହା ସତ ନହେଉ ସେ ସ୍ୱପ୍ନ
ସତ ନହେଉ ସେ ସ୍ୱପ୍ନ ।

ଶାବକ ଦୁଇଟି ଶୋଇଥା'ନ୍ତୁ ନିଦରେ
ଉଠିଲେ, ମେଘସହ, ପବନସହ
ଖେଳିବାକୁ ଯିବେ ।

ଚାରିଆଡେ ଧର୍ମଘଟ
ବିମାନଘାଟିରେ ବୋମାର ଆତଙ୍କ
ଫାଲଗୁନି ତିଥିର ଝିଅ
ବସିଥିବ ଏକା ଏକା
ପୃଥିବୀକୁ ମୁହଁକରି ।
ପୃଥିବୀର ବଡ଼ ବେଶୀ କଷ୍ଟ ଆଜି
ଝିଅ ଓ ପୃଥିବୀ ଦୁହେଁ ଏକା ପରି ।

ଦୁଃଖରେ ଛାତି ଫାଟିଗଲେ ବି
ପାଣି ବିନ୍ଦୁଏ ବାହାରେନି ଆଖିରୁ ।
ଝିଅ ଆଜି ଏକା ଏକା ବସିଥିବ ଭାଗ୍ୟସହ
ଝରକା ନଥିବା ଘରେ ।
ଭୋର ସ୍ୱପ୍ନ କ'ଣ ସତ ?
ଆହା ସତ ନହେଉ ସେ ସ୍ୱପ୍ନ ।

•

## ଘର (୩)

ଚିଲିକାକୁ ବୁଲିଆସିଥିବା
ସାଇବେରିଆର ଚଢ଼େଇମାନେ
ଘରକୁ ଫେରିବାକୁ ମନ କଲେଣି ।

ଭୁବନେଶ୍ୱରର ସବୁ ମନ୍ଦିର ଗୁମ୍ଫାରେ ଥିବା
ପାରାବତମାନେ
ଘରମନସ୍କ ହେଲେଣି
ପାର୍ବଣ ପାଇଁ ମୁଁ ବି ଫେରିଯିବି ଘରକୁ
ସମୁଦ୍ରକୂଳ ଗାଁକୁ ।

ଗାଁ'ର ଶୈଶବକୁ
କେଉଁ ସୁଦୂର ଶୈଶବରେ
ମୋ ହାତରେ ଜହ୍ନ ଖସିପଡିବ ବୋଲି
ମାଆ ସ୍ୱପ୍ନ ଦେଖାଇଥିଲା ।

ମାଆ ଆଜି ବଡ଼ ବେଶୀ ଅସହାୟ
ଠିକ୍ ମୋ ପ୍ରିୟ ଭାରତବର୍ଷ ପରି ।
ଜୀବନର ସବୁ ଉଦ୍‌ବେଗକୁ କୋଳାଗ୍ରତ କରି
ତଥାପି ମୁଁ ଅପେକ୍ଷା କରୁଛି
କେବେ ଜହ୍ନ ଖସିପଡ଼ିବ
ମୋ ଲୁହ-ଲହୁ ନେସାନେସି ହାତରେ ।

•

## କାହିଁ ମେଘ କାହିଁ ପ୍ରିୟ ନଈ

ଜୀବନ ଏମିତି ଦିନେ
ଶେଷ ହୋଇଯିବ
ବିନ୍ଦୁ ବିନ୍ଦୁ ହୋଇ
ଖାଲି ଡଙ୍ଗାଟି ସେମିତି
ନଈକୂଳେ ପଡି ରହିଥିବ
ଆକାଶକୁ ଚାହିଁ ।

ଜାଣିଛି ମୁଁ
ସବୁଛାଡ଼ି ଚାଲିଯିବି
ପ୍ରିୟ ବହି, ସ୍ମୃତିର ଆଲବମ୍

ଏମିତି ଜୀବନ ଦିନେ ଶେଷ ହୋଇଯିବ
ବିନ୍ଦୁ ବିନ୍ଦୁ ହୋଇ ।

କନିଅର ଗଛଟିରେ
ଗଛେ ଫୁଲ ଫୁଟିଥିବ
ଶୈଶବର ସାଳନ୍ଦୀରେ
ଜହ୍ନରାତି ଆସୁଥିବ
ଫେରି ଯାଉଥିବ ।

ତଥାପି ମୁଁ ଜାଣେ,
ସବୁଛାଡ଼ି ଯିବାକୁ ପଡ଼ିବ ମୋତେ
ଦିନେ, ନିଶ୍ଚେ ଦିନେ ।

ପିଲାଦିନେ ମେଘକୁ ମୁଁ ଡାକୁଥିଲି
ଆ ମେଘ ବୋଲି ।
ବର୍ଷାକୁ କହୁଥିଲି ରହ ବର୍ଷା ରହ
କାହିଁ ଆଜି ମେଘମୟ ବେଳ
କାହିଁ ପ୍ରିୟନଈ ।

ମୁଁ ଯେ ସରି ଯାଉଅଛି ସବୁବେଳ
ବିନ୍ଦୁ ବିନ୍ଦୁ ହୋଇ ।
କାହିଁ ମେଘ କାହିଁ ପ୍ରିୟ ନଈ !

•

## ସ୍ୱରାଜ୍ୟର ଚାକିରି ଦରକାର

ସ୍ୱରାଜ୍ୟର ଚାକିରି ଖୁବ୍ ଦରକାର
ବାପା ନାହାଁନ୍ତି
ବିଧବା ମା' ଆଉ ଭଉଣୀ ।

ଦଶବର୍ଷ ତଳେ
ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକ ପାଇଥିଲା
ସେ କଥା ସ୍ୱରାଜ୍ୟ ଭୁଲିଗଲାଣି ।

ଇଣ୍ଟରଭିଉ ପରେ ଇଣ୍ଟରଭିଉ ଦେଇ ଦେଇ
ସ୍ୱରାଜ୍ୟ ଆଜି କ୍ଲାନ୍ତ, ଅବସନ୍ନ ।
ଚାକିରି ପାଇଁ ଇଣ୍ଟରଭିଉ ଯେ ଆଦୌ ଜରୁରି ନୁହେଁ
ଏକଥା ସ୍ୱରାଜ୍ୟ ବୁଝି ସାରିଲାଣି ।

ଚାକିରି ଖୋଜାରେ
ସରିଗଲା ତା'ର ଦଶଟି ମୂଲ୍ୟବାନ ବର୍ଷ ।
କିଏ ଫେରାଇ ଦେଇ ପାରିବ
ତା'ର ମୂଲ୍ୟବାନ ସମୟ ।

ଘରେ ବିଧବା ମାଆ
ଆଉ ଭଉଣୀ ।
ଏକମାତ୍ର ସ୍ୱରାଜ୍ୟ
ତାଙ୍କୁ ଏ ପାରିରୁ ଆରପାରିକୁ
ନେଇ ପାରିବ ।

ଆପଣ ତ ତାକୁ ପିଲାଦିନୁ ଜାଣନ୍ତି
ବୈରାଗୀବାବୁ ।
ପିଲାଟା କେତେ ଉଜ୍ଜ୍ୱଳ
ଆଉ ସବୁକଥାରେ ପ୍ରଥମ ଥିଲା ।

ଚାକିରି ନୁହେଁ; ବଞ୍ଚିବା ପାଇଁ
ଗଞ୍ଜେଇ ଆଜି ତା'ର ଅବଲମ୍ବନ ।
ଆମ ଦେଶର ଉଜ୍ଜ୍ୱଳ ଭବିଷ୍ୟତମାନେ
ଏମିତି ନିଜକୁ ନଷ୍ଟ କରିଦିଅନ୍ତି
ସେଥିପାଇଁ ଆପଣମାନେ ହିଁ ଦାୟୀ
ବୈରାଗୀବାବୁ ।

ଆପଣଙ୍କ ଅଯୋଗ୍ୟ ବନ୍ଧୁ-ପୁତ୍ର ପାଇଁ
କେତେ ବଡ଼ ଚାକିରି ଉପହାର ନ ଦେଲେ
ସେକଥା ଏ ଦେଶର
ଗଛପତ୍ର ବି ଜାଣନ୍ତି ।

ଅନ୍ୟାୟ ବିରୁଦ୍ଧରେ ପାଟିଖୋଲିଲେ
ଏଠି ମୁଣ୍ଡକାଟ ହୋଇଯିବ ।
ଆପଣ ସବୁ ଜାଣନ୍ତି ବୈରାଗୀବାବୁ
ସ୍ୱରାଜ୍ୟର ଚାକିରି ଖୁବ୍ ଜରୁରୀ
ପିଅନ ଚାକିରି ହେଲେ ବି ଚଳିବ ।
ଘରେ ବିଧବା ମାଆ
ଆଉ ଭଉଣୀ ।

•

## କାହାକୁ ମୁଁ ଡାକୁଥିଲି

ସେଦିନ ମୋ ଆକୁଳ ଡାକରେ
ପକ୍ଷୀଙ୍କର ନିଦ ଭାଙ୍ଗିଗଲା ।
ପୃଥିବୀର ସବୁଜିମା ନିଷ୍ପ୍ରଭ ଦିଶିଲା ।

ଦିଗଦିଗନ୍ତ ଭେଦି ମୋ ଡାକ
ବାଧାପାଇ ପୁନର୍ବାର
ମୋ ନିକଟକୁ ଲେଉଟି ଆସିଲା ।
ସେଦିନ ମୋ ଆକୁଳ ଡାକରେ
ପୃଥିବୀର ନିଦ ଭାଙ୍ଗିଗଲା ।

କାହାକୁ ମୁଁ ଡାକୁଥିଲି
ମୃଗୁଣୀ ଡାକିଲା ପରି
ନିଦରେ, ସ୍ୱପ୍ନରେ ।

ମୁଁ ଜାଣେ
ମୋ ଫେରିବାବେଳକୁ ଡେରି ହୋଇଯାଇଥିବ ।
ମୁଁ ସେମିତି ଡାକି ଡାକି ଫେରିଯାଇଥିବି
ମୋ ଡାକ କାହାରିକୁ ଶୁଭୁନଥିବ
ପକ୍ଷୀଙ୍କର, ଫୁଲଙ୍କର
ଖାଲି ଯାହା ନିଦ ଭାଙ୍ଗିଯିବ ।

•

## ମାଆକୁ ଭାଗ କରାଗଲା

ସେଦିନ ଗାଁରେ ମାଆକୁ ଭାଗକରାଗଲା
ସେଦିନ ଗାଁ ଆକାଶରେ ଜହ୍ନ ନଥିଲା
ତାରା ବି ନଥିଲା ।
ମଝିରେ ମଝିରେ
ସମୁଦ୍ରର ଆର୍ତ୍ତନାଦ
ଯାହା ଶୁଭୁଥିଲା ।

ସେଦିନ ମାଆକୁ ଜମିବାଡି ସହ
ସମସ୍ତଙ୍କ ସାମ୍ନାରେ ଭାଗ କରାଗଲା ।
ମାଆର ଭରଣପୋଷଣ ଭାର
ସାନଭାଇ ଅଧାନେଲା
ଆଉ ଅଧେ ବଡ଼ଭାଇ
ସମସ୍ତଙ୍କୁ ସାକ୍ଷୀରଖି
ମାଆକୁ ଭାଗକରାଗଲା ।

ବିସର୍ଜିତା ମୂର୍ତ୍ତିପରି ମାଆ ବସିଥିଲା ଚୁପ୍‌ଚାପ୍
ଅପେକ୍ଷା କରୁଥିଲା
ବିସର୍ଜନ ପରେ
କେତେବେଳେ ତାକୁ
ଉଙ୍କେଇ ଦିଆଯିବ ସମୁଦ୍ରରେ ।

•

## ରୋହିତାଶ୍ୱ

ରୋହିତାଶ୍ୱ ଗାଁରେ ସେଦିନ
ଅକସ୍ମାତ୍ ଘୂର୍ଣ୍ଣିବାତ୍ୟା ହେଲା
ଚତୁର୍ଥ ଶ୍ରେଣୀର ଛାତ୍ର ରୋହିତାଶ୍ୱ
ବ୍ୟସ୍ତଥିଲା ଚିତ୍ରଅଙ୍କାରେ ।

ବାତ୍ୟା ଉଡ଼ାଇନେଲା
ତ୍ରଇଂଖାତା, ସ୍କୁଲବାକ୍ସ
ପାଣିବୋତଲ ।

ନଈକୂଳରେ
ବଣଭୋଜିର ଦୃଶ୍ୟଥିବା
ଏକ ଛୋଟ ଚିତ୍ର ।

ଚତୁର୍ଥଶ୍ରେଣୀର ଛାତ୍ର ରୋହିତାଶ୍ୱ
ନିଶ୍ଚେ ଏକ ଚିତ୍ରକର ହୋଇଥାନ୍ତା
କିମ୍ବା କବି ।

ସୁବର୍ଣ୍ଣରେଖାକୁ
ଆଙ୍କିଥାନ୍ତା ଶବ୍ଦରେ କିମ୍ବା ପ୍ରତିମାରେ ।
ଶିଶୁ ରୋହିତାଶ୍ୱ
ହଠାତ୍ ସେଦିନ
ଲିଭିଗଲା ସ୍କୁଲ ଘର ଭଙ୍ଗାକାନ୍ଥତଳେ
ଅସମୟରେ ।

•

## ସବୁ ମାଆ ଭିତରେ ଈଶ୍ୱରୀଟିଏ

ଘରର ଏରୁଣ୍ଡିବନ୍ଧରେ ପାଦ ଦେଲେ
ମାଆର ଭଲପାଇବାର
ଜରିବସା ଅଂଚଳ
ପ୍ରଥମେ ପୋଛିଦିଏ
ମୋର ସବୁ ବିଷାଦର
ସ୍ୱେଦବିନ୍ଦୁକୁ ।

କିଆଖଇର ମିଶା ସପରକଟୁମଖା
ଖିଲିପାନର ବାସ୍ନା
ମହକିଯାଉଥାଏ ଦାଣ୍ଡରୁ ବାହାର ।

ରଙ୍ଗିନ ଟି.ଭି. କିମ୍ବା
ଭି.ସି.ଆର. ଘରେ ମା ନଥାଏ,
ଛାତ ଉପର କଅଁଳ ଖରାରେ
ବଡ଼ି ପାରୁଥାଏ
ରୋଷେଇ ଘର ଈଶାନ କୋଣରେ
ଥକ୍କାହୋଇ ବସିପଡ଼ିଥାଏ ।

କେତକୀଖଇର ମିଶା ପାନଖିଆ ପାଟିରେ
ମାଆ ଈଶ୍ୱରୀ ପରି ବାସୁଥାଏ ।
ମାଆ କ'ଣ ଦେବୀ ?
ମାଆ କ'ଣ ଈଶ୍ୱରୀ !
ମାଆ ବେଳେବେଳେ
ହସେ, କାନ୍ଦେ, କଷ୍ଟ ପାଏ,
କଷ୍ଟ ପାଇ ପାଇ ପଥର ପାଲଟିଯାଏ
ଠିକ୍ ଈଶ୍ୱରୀମାନଙ୍କ ପରି ।

ଦେବୀମାନେ ଯାତନା ପାଇଲେ
ବିଶ୍ୱାସର ପଦ୍ମବନ ଜଳିପୋଡ଼ି
ଛାରଖାର ହୋଇଯାଏ
ସବୁ ମାଆ ଭିତରେ ଦେବୀଟିଏ
ସବୁ ମାଆ ଭିତରେ ଈଶ୍ୱରୀଟିଏ ଲୁଚିଥାଏ ।

•

## ମୁଁ ଆଜି ଫେରିଯିବି

ମୁଁ ଆଜି ଫେରିଯିବି ମୋ ଘରକୁ
ଯେଉଁଠି କୀଟସ୍, ସେଲି ଆଉ ରବୀନ୍ଦ୍ରନାଥ
ମୁଖସ୍ଥ କରୁଛି ଝିଅଟିଏ ।

ଫାଲ୍‌ଗୁନି ତିଥିର ଝିଅଟିଏ
ଦୁଃଖିନୀ ସନ୍ଧ୍ୟାରେ ବସି
ଏକା ଏକା ।

ମୁଁ ଆଜି ଫେରିଯିବି
ମୋର ସେଇ ବିଶ୍ୱାସର ବନ୍ଦରକୁ ।

ଯେଉଁଠାରେ
ପ୍ରତ୍ୟୟକୁ ରଖି ଆସିଥିଲି
ନିଭୃତରେ ।

ଆସିଲାବେଳେ
କହି ଆସିଥିଲି ଝିଅକୁ
ଏଇଠି ବସିଥିବୁ ଝିଅ
ଏକବିଂଶ ଶତାବ୍ଦୀ ଆଡ଼କୁ
ମନଦେବୁ ନାହିଁ
ଏଇଠି ବସିଥିବୁ
ଏଇ ପ୍ରତିଜ୍ଞାର ବଳୟ ଭିତରେ ।

ତା' ଆଗକୁ ପାଦ ବଢ଼ାଇଲେ
ଅବିଶ୍ୱାସୀ ହୋଇଯିବୁ
ଅହଂକାରୀ ହୋଇଯିବୁ ।

ଝିଅଟି ବଡ଼ ବେଶୀ ଅଭିମାନୀ
ଠିକ୍ ତା' ମାଆ ପରି ।
ଝିଅଟି ବଡ଼ ବେଶୀ ସ୍ୱାଭିମାନୀ
ଠିକ୍ ତା' ମାଆ ପରି ।

ଆହା ପଦ୍ମପରି ଝିଅଟି
ବସିଥିବ ଏକା ଏକା ଦୁଃଖିନୀ ସନ୍ଧ୍ୟାରେ ।
ମୁଁ ଆଜି ଫେରିଯିବି
ମୋର ଘରକୁ

ଯେଉଁଠି ମୋ ଭାବନା ଟିକକୁ
ସାଇତି ରଖି ଆସିଛି
ଯତ୍ନରେ
ପାଟକନା ଭିତରେ ।

•

## ଆଜି ଭାରି ଅଲଗା ଲାଗୁଛ

ଆଜି ଭାରି ଅଲଗା ଲାଗୁଛ
ଯେମିତି ତମେ ନୁହ
ଆଉ ଜଣେ କିଏ ।

କେତେ ବେଶୀ ଖାପଛଡ଼ା
ତମର ଏ କଥାବାର୍ତ୍ତା
କାହିଁ କେଉଁଠି ତ କିଛି ଘଟିନାହିଁ
ସବୁ କିଛି ଠିକ୍‌ଠାକ୍ ଅଛି ।

କାଲି ସଂଜବେଳେ ଯାହା
ଭୂମିକମ୍ପଟିଏ ଅନୁଭୂତ ହୋଇଥିଲା
ହୃଦୟରେ ।

ଆଜି ଭାରି ଅଲଗା ଲାଗୁଛ
ତମ ସୁକୁମାର ଭାବନାକୁ
କୁହ, କେଉଁଠାରେ
ଛାଡି ଆସିଛ ।

•

## ସ୍ୱପ୍ନ ହୋଇ ପହଞ୍ଚିବି

ମୁଁ ସେଦିନ ସ୍ୱପ୍ନହୋଇ ପହଞ୍ଚିବି ତୁମରି ପାଖରେ
ବଗିଚାରେ ବସି ବସି
ହଜି ଯାଇଥିବ ତୁମେ ଭାବନା ଭିତରେ ।

ନୂଆକରି ଉଡ଼ି ଶିଖୁଥିବା
ଚଢ଼େଇ ଛୁଆଙ୍କୁ ଦେଖୁଥିବ
ଅନ୍ୟମନସ୍କ ଭାବରେ ।

ମେଘ ନଥିବ ଆକାଶରେ
ଆଶ୍ଚର୍ଯ୍ୟ ଫଗୁଣଟିଏ ଝୁଲିପଡିଥିବ
ଝର୍କାପାଖ ମଲ୍ଲିବୁଦା ଉପରେ ।
ମୁଁ ସେଦିନ ଆସିଲା ବେଳକୁ ଦେଖିବି
ତମେ ସ୍ୱପ୍ନ ଦେଖୁଥିବ ବଗିଚାରେ
ମୁଁ ସ୍ୱପ୍ନ ହୋଇ ପହଂଚିବି ତୁମରି ପାଖରେ ।

ମୁଁ ତ ନଥିବି ସଚରାଚରରେ
ଚୈତ୍ରର ପବନ ହୋଇ ତମ ଦେହକୁ ଯାହା
ଆଉଁଶି ଦେଉଥିବି
ଅତି ସନ୍ତର୍ପଣରେ ।

ମୁଁ ସେଦିନ ସ୍ମୃତି ହୋଇଯାଇଥିବି
ସ୍ୱପ୍ନ ହୋଇଯାଇଥିବି ।
କେଉଁଆଡେ ନଥାଇ ବି
ସବୁଠାରେ ଥିବି
ତମ ପାଖେ ପାଖେ ଥିବି ।

•

## ଘର (୪)

ଘରଟି ଏବେ ଦିନେ ଦିନେ
ବଡ଼ ଦୁଃଖୀ ଦୁଃଖୀ ମନେହୁଏ ।

ଏକଦା ଏଇ ଘରେ
ଭଲପାଇବା ଉଛୁଳିପଡି
ତଳେ ପଡୁଥିଲା
ତଳେ ପଡି ବିଶ୍ୱାସର ପଦ୍ମ ପାଲଟି ଯାଉଥିଲା ।

ସେଇ ପଦ୍ମଗନ୍ଧରେ ଭରିଉଠୁଥିଲା
ଘରଦ୍ୱାର
ଘରଭିତରେ ଆଜି ଅନେକ ଦ୍ୱୀପ
ସେ ଦ୍ୱୀପରେ ନା ଅଛି ଆଲୁଅ
ନା ଅଛି ପବନ ।

ଗଛମାନଙ୍କ ପଞ୍ଜରାରେ ବଗିଚା ଶ୍ରୀହୀନ
ଘରଟିର ଆଜିକାଲି ବଡ଼ ବେଶୀ ଦୁଃଖ
ତାକୁ ନେଇ ସ୍ୱପ୍ନ ଦେଖୁଥିବା ଲୋକଟି
ଆଜି ତୈଳଚିତ୍ର ପାଲଟି ଯାଇଛି କାନ୍ଥରେ ।

ଅବିଶ୍ୱାସର ଆବରଣ ତଳେ
ଭଲପାଇବା ପଥର ହୋଇଯାଇଛି,
ଲୋକକଥାର ରାଜକୁମାର ପରି
ବିଶ୍ୱାସ ବଡ଼ ଅସହାୟ ଆଜି ।

କେହି ତା'କୁ ଖୋଜନ୍ତିନି
ସେ ବସିଥାଏ ତ ବସିଥାଏ
ଶୋଇଥାଏ ତ ଶୋଇଥାଏ,
ଠିକ୍ ବୁଢ଼ୀମାଆ ପରି ।

ମାଟିଘର ଠଣାରେ ଯେଉଁ ବିଶ୍ୱାସର ଦୀପଟିକୁ
ସେ ଜଳାଇ ରଖୁଥିଲା
କାହାର ଦୁରନ୍ତ ହାତ ଆସି
କେତେବେଳେ ଲିଭାଇଦେଇ ଯାଇଛି
ବେଳେବେଳେ ଭାବେଁ ଘରକୁ ଫେରିଯିବି
କୂଅମୂଳର ପୋଦିନାପତ୍ରକୁ ଛୁଇଁଯାଉଥିବା ପବନ ଦେହରେ
ଟିକିଏ ଆଉଜି ପଡ଼ିବି ।

ଦୀପମାନଙ୍କୁ କହିବି
ମହାର୍ଘ ଭଲ ପାଇବା ଟିକକ

ନିଜ ଭିତରେ ସାଇତି ଶିଖ
ଭଲପାଇବାର ବଡ଼ ବେଶୀ ଅଭାବ ଆଜି ।
ଘରଟି ଦିନେ ଦିନେ ବଡ଼ କଷ୍ଟପାଏ
ଠିକ୍ ମାଆ ପରି ।

•

## ଅକାତକାତ ପାଣିରେ

ଅକାତକାତ ପାଣିରେ
ତୋତେ ପହଁରା ଶିଖାଉ ଶିଖାଉ
କଟିଗଲା ସାରାଟା ଜୀବନ ।

ମା ପାଦ ଉପରେ
ତୋର ଟିକିଟିକି ପାଦକୁ ଥାପି
ତୋତେ ଚାଲିବା ଶିଖାଉ ଶିଖାଉ
ସକାଳ କେତେବେଳେ
ବୟସ୍କ ହୋଇଗଲା ଜାଣେନି ।

ସେଇ ସାତ ସକାଳରୁ
ସ୍କୁଲର ବନ୍ଦୀଘରେ ତୁ ବନ୍ଦୀ ହେଲୁ
ଝରକା ବାଟେ ଆକାଶକୁ
ତନ୍ମୟ ହୋଇ ଅନାଇ ରହିଲୁ ।

ସୂର୍ଯ୍ୟ ଆଡକୁ
ବର୍ଷା ଆଡକୁ
ତୋର ଟିକି ହାତ ବଢ଼ାଇଦେଲୁ ।

ଶିକ୍ଷକମାନେ ଆଶ୍ଚର୍ଯ୍ୟ ହେଲେ
ପ୍ରତିବାଦର ଛୁରିରେ
ତୋ ନିରୀହ ସୁକୁମାର ଭାବକୁ
ଟିକ୍ ଟିକ୍ କରିଦେଲେ ।

ଆକାଶ ଆଜି ଅନେକ ଦୂରରେ
ଅକାତକାତ ପାଣିରେ
ତୋତେ ପହଁରା ଶିଖାଉ ଶିଖାଉ
କଟିଗଲା ସାରାଟା ଜୀବନ ।

ଶୈଶବର ଶିଶୁପରି
ଆଜି ବି ସେମିତି ତୁ ସୁକୁମାର
ସେମିତି ସରଳ
ଆଗରେ ତୋର ଅମୃତ ସମୟ ।

ଅକାତକାତ ପାଣିରେ
ତୋତେ ପହଁରା ଶିଖାଉ ଶିଖାଉ
କଟିଗଲା ସାରାଟା ଜୀବନ ।

•

## ମୋତେ ପାଖକୁ ଡାକିନିଅ

ମୁଁ ଶୋକରେ, ଅଭିମାନରେ
ଅସ୍ଥିରତାରେ ଅଛି
ମୋତେ ଡାକିନିଅ ପାଖକୁ ।

ମୋତେ ଚକ୍ଷୁଷ୍ମାନ କର
ଅନ୍ଧତ୍ୱରୁ, ଅପାରଗତାରୁ
ମୋତେ ମୁକ୍ତିଦିଅ ।
ଅଙ୍ଗୀକାରରେ
କୋଳେଇ ନିଅ ସବୁ ଅହଙ୍କାର ।

ମୁଁ ଅପ୍ରେମରେ ଅଛି
ଶୋକରେ, ଅଭିମାନରେ,
ମୋତେ ଡାକିନିଅ ପାଖକୁ ।

ବଗିଚାର ମହୋତ୍ସବରେ
ତମେ ଏତେ ବିଭୋର ଯେ
ନ ଡାକିଲେ ମୁଁ ଯିବି କାହିଁକି ?

•

## ଦୁଇଟି କବିତା

### ।। ସୁବର୍ଣ୍ଣମୟ ସବୁ ।।

ସମୟ ସରିଯବା ଆଗରୁ
ଆସ, କିଛିବେଳ ସୁଖ ଦୁଃଖ ହେବା
ଏଠି ଆଉ ଅଛି କ'ଣ ଯେ
ଆମେ ଅଣ୍ଡାଳି ହେଉଛେ ଅନ୍ଧାରରେ !
ସାରାଟା ଜୀବନ ସରିଗଲା
ପାହାଚ ଚଢ଼ାରେ ।

ସମୟ ମିଳିଲାନି ଏକାଠି ବସି
ସୁଖଦୁଃଖ ହେବାରେ ।
ସୁବର୍ଣ୍ଣ ସମୟ ସବୁ ବିବର୍ଣ୍ଣ ଦିଶିଲା
ପରସ୍ପରର ଭୁଲ୍ ଖୋଜିବାରେ ।

### ।। ପୁନଶ୍ଚ ଘର ।।

କେଉଁଠି ମୋ ଘର ?
ଗଙ୍ଗାରେ
ଗୟାରେ
ନା ତ୍ରିବେଣୀରେ ?

ଘରଟିକୁ ପକ୍ଷୀବସା ପରି କରିବାକୁ ଯାଇ
ପାରି ନାହିଁ ।
ସ୍ୱପ୍ନ ସହ ବାସ କରୁ କରୁ
ସ୍ମୃତି ସହ ବାସ କରୁ କରୁ
ଅସହାୟତାରେ ଭାଙ୍ଗିଯାଇଛି ।

ମଣିଷ ହାତରେ କ'ଣ ଅଛି ଯେ
ସେ ସବୁ ପାରନ୍ତା !
ମୁଁ ବୁଝିପାରି ନାହିଁ, କେଉଁଠି ମୋ ଘର
ଗଙ୍ଗାରେ, ଗୟାରେ
ନା ତ୍ରିବେଣୀରେ ।

•

## ଡେରି ହୋଇଯାଇଥିବ

ତମେ ଆସିଲାବେଳକୁ ଡେରି ହୋଇଯାଇଥିବ
ପ୍ରିୟଜନ ସହ ଝିଅ ଚାଲିଯାଇଥିବ
ତା' ନିଜଘରକୁ
ଆଉଥରେ ଆସିବ କହି ।

ସୂର୍ପଣଖା ପଛରେ
ଅରଣ୍ୟରୁ ଅରଣ୍ୟ ଦଉଡି ଦଉଡି
ଥକିଯାଇଥିବ ପୁଅ ।

ତମେ ଆସିଲା ବେଳକୁ ସେଦିନ
ଖୁବ୍ ଡେରି ହୋଇଯାଇଥିବ ।
ମୁଁ ନଥିବି ସେଦିନ ମର୍ତ୍ତ୍ୟଲୋକରେ
ସୁଖଦୁଃଖ ସଙ୍ଗରେ ।

ପୁନର୍ଜନ୍ମର ସମ୍ଭାବ୍ୟ ଭିତରେ
ଅସହାୟ ଲୁହବିନ୍ଦୁ ପରି ଭାସିବୁଲୁଥିବି
ମୁଁ ନଥାଇ ବି
ସବୁ ଦେଖୁଥିବି ।

ପ୍ରିୟଜନ ସହ ଝିଅ ଚାଲିଯାଇଥିବ
ତା' ନିଜ ଘରକୁ
ଆଉଥରେ ଆସିବ କହି ।

•

## କୁଆଡେ ନେଉଛ ମୋତେ

କୁଆଡେ ନେଉଛ ମୋତେ ଏତେବେଳେ !
ମୋ ପଛରେ କେମିତି ଦେଖ
ଅସଂଖ୍ୟ ଆଗ୍ରହୀ ଆଖି
ଉତ୍କଣ୍ଠା ବ୍ୟାକୁଳ ।
କୁଆଡେ ନେଉଛ ମୋତେ ଏତେବେଳେ !

ଏମିତି ତ ଯିବାର ନଥିଲା
ସାରାଜୀବନ ତ ସରିଗଲା
ରକ୍ତକ୍ଷରଣରେ
ଏତେ ରକ୍ତ କାହିଁ ଯେ
ବଞ୍ଚାଇ ପାରିବ ମୋତେ
ଶେଷ ସମୟରେ
ଆଉ କିଛି ବେଳ ରଖ ମୋତେ
ମୁଁ ଯେ ବହୁଦିନୁ ଦେଖିନାହିଁ
ସବୁଜ ମାଟିର ଶଙ୍ଖଚିଲ ଗାଆଁ ।

ଆଉ କିଛି ବେଳ ରଖ ମୋତେ
ମୁଁ ଯେ କେଉଁକାଳୁ ଯାଇନାହିଁ
ବାପାଙ୍କର ସମାଧି ପାଖକୁ ।

ଦେଖ, କେମିତି ବେଦନାରେ ଭାରାକ୍ରାନ୍ତ ମନ
ଗାଆଁରୁ ଆସିଛି ସାନଭାଇ
ମୋତେ ଦେଖିବାକୁ ।

ସାଙ୍ଗରେ ଆଣିଛି
ଗାଆଁର ପାଳୁଅ, ବିରିବଡ଼ି, ଗୁଆଘିଅ
ମାମା ପଠାଇଛି ।
କାହିଁକି ନେଉଛ ମୋତେ ଅବେଳରେ
ଯିବାକୁ ଯେ ତିଳେ ଇଛା ନାହିଁ ମୋର

ଏତେ ଶୀଘ୍ର ବେଳ ହୋଇଗଲା
ଯିବା ପାଇଁ ?
ଏତେ କାମ ବାକି ରଖି
ଯିବି ମୁଁ କେମିତି ?
ଦେଖ, ସକାଳ ପହରୁ
କାଳି ବିଲେଇଟା
ବାରମ୍ବାର ଗୋଡ଼ରେ ଛନ୍ଦୁଛି
କେମିତି ମୁଁ ଯିବି ଏତେ ବେଳେ
ଏଇ ଅବେଳରେ ?

•

## ଗୁଆମାଳ

ଏମିତି ସୁନ୍ଦର ଗାଁଟିଏ ଗୁଆମାଳ
କାନ୍ତକବିଙ୍କର ଗାଁ
ଗଛରୁ ଝରୁଛି ବାସ୍ନାରେ ଭିଜା
ପବନର ଦେହ ।

ମନ୍ଦିରର ସିଂହଦ୍ୱାର ପରି
ପାହାନ୍ତିଆ ତରା ଆଲୁଅରେ
ନିଚିପର ଗୋହିରି ବାଟ
ଗୁଆ, ଆମ୍ବ, ନଡ଼ିଆର
ସ୍ନିଗ୍ଧ ଛାଇତଳେ
ପବନର ଦୋଳି ଖେଳ
ଶୁଭକାଉ ଡାକ ।

ଏ ବାଟ ଲମ୍ବିଛି ବହୁଦୂର
ଜୀବନରୁ ସ୍ୱର୍ଗଦ୍ୱାର ।

କବି-ତୀର୍ଥ ଗୁଆମାଳ
ଆଦ୍ୟଶ୍ଳୋକ କବି-ଚେତନାର ।

•

## ଦେବୀ ନୁହେଁ

ଏ ଯାବତ୍ ତୁମକୁ ମୁଁ କିଛି ବି ଦେଇନି
ଆଘାତ ବ୍ୟତୀତ ।

ଭଲଲାଗିବାର ମୁହୂର୍ତ୍ତ ସବୁକୁ
ନିର୍ଦ୍ଦୟ ଭାବରେ ଏଡାଇ ଯାଇଛି ।

ଘୃଣାର ଢେଉ
ଗୋଟାଏ ପରେ ଗୋଟାଏ ଆସି
ଭାଙ୍ଗିଦେଇ ଯାଇଛି
ସ୍ୱପ୍ନପରି ସୁନ୍ଦର ସ୍ମୃତିକୁ
ଏ ଯାବତ୍ ତୁମକୁ ମୁଁ କିଛି ବି ଦେଇନି
ଆଘାତ ବ୍ୟତୀତ ।

ଇଚ୍ଛାର ସାମ୍ରାଜ୍ୟରେ
ଇଚ୍ଛାମତୀ ହୋଇ ବଞ୍ଚିଛି
ଚିରକାଳ ।

ହୃଦୟହୀନତାକୁ ମାନି ନେଇଛ
ଉଦାର ଭାବରେ ।
ମୁକୁଳିତ ପତ୍ର ପରି
ପ୍ରେମମୟ ହୋଇଯାଇଛି ପୃଥିବୀ
ମୋତେ ନେଇ ବସାଇଲ
ଅନ୍ତଃକରଣରେ
ଦେବୀପରି ।

ମୁଁ ଯେ ଦେବୀ ନୁହେଁ
ହଜାରେ ଦୋଷ ଗୁଣର ଅଧିକାରୀ
ଦେବୀ ବୋଲି ଭାବିଲି କାହିଁକି !

ଏତେ ପ୍ରେମ ଦିଅନାହିଁ
ସବୁକିଛି ଦେବା ପରେ
କିଛି ଆଉ ବାକି ରହିନାହିଁ ।

•

## ଟ୍ରେନ୍ ଝର୍କାରେ ଗାଁ

ଆଜି ଆଉ ଅଛି କ'ଣ ଗାଁ'ରେ ଯିବାକୁ କହୁଛ !
ଦଳ ଦଳ ମହୁମାଛି
ମାଇଲ ମାଇଲ ଧରି ସୋରିଷଫୁଲର କ୍ଷେତ
ଡାହୁକ ଓ ଗେଣ୍ଡାଳିଆ ସୁଦୀର୍ଘ କୁହାଟ ।

ଉଲ୍ଲିଖିକଟାର ଦିନ
ପିଲାଦିନ ।
ଧାଡ଼ିବାନ୍ଧି 'ସତ୍ୟ ପଥେ ଧର୍ମ ପଥେ'
ଗାଇବାର ଦିନ, ପିଲାଦିନ
ଆଜି ଆଉ ଅଛି କ'ଣ ଗାଁରେ
ଯିବାକୁ କହୁଚ ।

ଆଜି ବଡ଼ ବେଶୀ କରୁଣ
ଶୋକାର୍ତ୍ତ ଦିଶୁଛି ଗାଁ ମୁହଁ
ଟ୍ରେନ୍‌ର ଝର୍କାରେ ।
କିଏ ଜଣେ ଡାକୁଛି ଏମିତି ମୋତେ
ପିଲାଦିନ ନାଁ ଧରି
ମଝି ରାତିଟାରେ ।

ପଛରୁ ଦିଶୁଛି ଗାଁ ରାସ୍ତାର ସିଲ୍‌ହଟ୍
ପଶିଆସୁଛି ପଦ୍ମ ଆଉ କଇଁର ବାସ୍ନା
ଟ୍ରେନ୍ ଝର୍କା ଦେଇ ।
ଆଜି ଆଉ ଅଛି କ'ଣ ଗାଁରେ
ଜିଦ୍ କରୁଛ ଯିବା ପାଇଁ ?

•

## ମଧୁବନ

ଏବେ ବି ମୋ କାନରେ ବାଜେ
ପବନ ଭିତରେ
ଅନ୍ଧାର ଭିତରେ
ଅବୁଝା ମା' କପୋତୀର
ଛାତିଫଟା କାନ୍ଦଣା ।

ସେଦିନ ସୁନ୍ଦର ଭାବରେ ଜଳୁଥିବା
ଦୀପ ସବୁକୁ
କେଉଁ ଉଦ୍‌ଭ୍ରାନ୍ତ ପବନ ଆସି
ଲିଭାଇ ଦେଇଗଲା ହଠାତ୍ ।

ଶହେ ଆଠ ଥର ଈଶ୍ୱରଙ୍କୁ ଜପୁଥିବା ହାତ
ସେଇଠି ସ୍ଥିର ହୋଇଗଲା ସେଦିନ ।
ଶହ ଶହ ମୋହଗ୍ରସ୍ତ ନିର୍ବେଦ ହୃଦୟରେ
ଅଗ୍ନି ସଂଯୋଗ କରାଗଲା ଏକାଠି
ଆତ୍ମା ଆଉ ପରମାତ୍ମାକୁ
ଅଗ୍ନି ଗ୍ରାସକରେ କି ନା ଜାଣେନି ।

ଗୋଟାଏ ମୁହୂର୍ତ୍ତରେ ମଣିଷ କିପରି ମଡ଼ା
ହୋଇଯାଏ
ତାହାହିଁ ଦେଖିଲି ମଧୁବନରେ ।

•

## ବେଳେ ବେଳେ ଭାବେଁ

ବେଳେ ବେଳେ ଭାବେଁ
ଚିଠି ଲେଖିବି ମାଆକୁ
କ'ଣ ଲେଖିବି ଚିଠିରେ
ଶବ୍ଦସବୁ ଶୁଖିଗଲାଣି ବହୁ ଦିନରୁ
ବେଳେ ବେଳେ ସ୍ୱପ୍ନ ଦେଖେଁ ମାଆକୁ

ଅନ୍ଧାର ଭିତରେ
ଗୁରୁଣ୍ଡି ଗୁରୁଣ୍ଡି
କ'ଣ ଏତେ ଖୋଜି ଚାଲିଛି ସେ ।

ଖୋଜୁଛି ଆଉ କାନ୍ଦୁଛି
ମାଆମାନେ ଦୁଃଖରେ କାନ୍ଦିଲେ
ମୋତେ ଜମା ଭଲଲାଗେନି ।

ଅଥଚ ଏମିତି ସେମାନଙ୍କ ଭାଗ୍ୟ ଯେ
ଲୁହ ଛଡ଼ା କିଏ ଅଛି ସେମାନଙ୍କର
ଏତେ ଆପଣାର ।
ସେମାନଙ୍କ ଆପଣାର ଦୁଃଖକୁ
ଈଶ୍ୱର ବି ବୁଝିନାହାଁନ୍ତି ଆଜିଯାଏ ।

ବେଳେ ବେଳେ ଭାବେଁ
ମାଆକୁ ଲେଖିବି
ମୋ ପିଲାଦିନଟା
କେତେ ଭଲଥିଲା
ଠିକ୍ ଶରତ ସକାଳ ପରି
ମୋ ହାତରେ ଜହ୍ନ ଖସିପଡ଼ିବ ବୋଲି
ତୁ ମୋତେ ସ୍ୱପ୍ନ ଦେଖାଉଥିଲୁ ।

ସେଇ ସ୍ୱପ୍ନକୁ
ମୋ ଭିତରେ
ଆଜି ବି ସାଇତି ରଖିଛି ।
ମୋ ପୁଅକୁ ଜହ୍ନର ସ୍ୱପ୍ନ
ଦେଖାଇ ପାରିଲି ନାହିଁ ବୋଲି ତ
ସିଏ ଆଜି
ସୁନାଖଣି ସଂଧାନରେ ବ୍ୟସ୍ତ ।

ମୋ ଭିତରେ ସେଇ
ସୁନ୍ଦର ଶୈଶବରେ

ଯେଉଁ ସୃଜନର ମଂଜିଟି
ଗୋପନରେ ପୋତି ଦେଇଥିଲୁ
ଦେଖ୍ କେତେ ବଡ଼ ହେଲାଣି
ସେ ସୁକୁମାର ଗଛଟି ।

ମୁଁ ଆଜି
ଆକାଶମୁଖୀ ହୋଇ ଅନାଇ ରହିଛି
କେବେ ନା କେବେ
ଜହ୍ନ ଆସି ଧରାଦେବ
ମୋ ହାତରେ ।
ବେଳେବେଳେ ଭାବେଁ
ଚିଠି ଲେଖିବି ମାଆକୁ
କ'ଣ ଲେଖିବି ସେ ଚିଠିରେ !!

•

## ଶବ୍ଦ ଶୋଇପଡିଲେ

କବି ଶୋଇପଡିଲେ
ପ୍ରିୟ ଶବ୍ଦମାନେ
ଶୋଇଯାଆନ୍ତି ନିଃଶବ୍ଦରେ ।
କାଲି ସାରାରାତି
ଶବ୍ଦ ଖୋଜାରେ ବ୍ୟାକୁଳ କବି ।

କାଲି ସାରାରାତି
ବୁଲି ବୁଲି କ୍ଳାନ୍ତ କବି
ଗ୍ରହମଣ୍ଡଳରେ ।

ବେଳେବେଳେ ଶବ୍ଦମାନେ
କପଟକରନ୍ତି କବି ସାଙ୍ଗରେ
ବହୁତ ଖୋଜିଲା ପରେ ଦେଖାଗଲା
ଶବ୍ଦ ଶୋଇପଡିଥିଲା
କବିର ଅତିନିକଟରେ ।

•

## ଶ୍ରବଣକୁମାର

ଅଥର୍ବପିତାର ଆୟୁଷ ନେଇ
ଅନୁଭବର ଉର୍ବର ଭୂମିରେ
ତୁ ଥାପିଦେଲୁ ମଞ୍ଜିଟିଏ ଶ୍ରବଣକୁମାର
ପୁଷ୍କଳ ହୋଇଗଲା ଭୂମି
ଆଖିର ଜ୍ୟୋତିରେ
ଆଲୋକିତ ହୋଇଗଲା
ବ୍ରହ୍ମାଣ୍ଡପରି ବିସ୍ତାରିତ ହୃଦୟ ।

ମାଆର ଭଲପାଇବାର ସୁଗନ୍ଧ ଟିକକ
କେତେ ସୁରକ୍ଷିତ ରହିପାରେ ଜୀବନସାରା
ବୁଝାଇଦେଲୁ ଶ୍ରବଣକୁମାର ।

ହୃଦୟକୁ ବ୍ରହ୍ମାଣ୍ଡ କରିଦେଲୁ
ବ୍ରହ୍ମାଣ୍ଡରେ ଜୀବନ ସମର୍ପିତ ହୋଇଗଲା
ସମର୍ପଣରେ
ପୁଷ୍କଳ ହୋଇଗଲା ଭୂମି
ଦେବଭୂମି ହେଲା ଭାରତ ।

•

## ବିଶ୍ୱାସରେ ସବୁଜ କରିଦିଅ

ମୋ ଆରତ ପଦ୍ମବନଟିକୁ
ବିଶ୍ୱାସରେ ସବୁଜ କରିଦେବ ବୋଲି
ଏତେ ବାଟ ଧାଇଁ ଆସିଛି ବ୍ୟାକୁଳ ହୋଇ ।

ରତ୍ନବେଦୀ ତଳେ ପଣତ ପତାଇ ରଖିଛି
କାହିଁ କେତେ ଯୁଗରୁ
କାଳେ ଆଡ଼ନୟନରେ ଥରେ
ଚାହିଁଦେବ ବୋଲି ।

ସିଦ୍ଧଗଣେଶଙ୍କ ପାଖରେ
ଦୀପଟିଏ ଜାଳିଲାବେଳେ
ଶହେ ଆଠଥର ମନ୍ତ୍ରପରି ଉଚ୍ଚାରଣ କରିଛି
ମୋ ଆରତ ପଦ୍ମବନଟିକୁ
ବିଶ୍ୱାସରେ ସବୁଜ କରିଦିଅ
ବିଶ୍ୱାସରେ ସବୁଜ କରିଦିଅ
ବିଶ୍ୱାସରେ ସବୁଜ କରିଦିଅ ।

•

## ସବୁଜ ଭୂମିକୁ

କୁମର ମଣିରେ
ହାତୀଘୋଡା ପାଟଛତି
ରୁପା ଆଉ ସୁନାର ପାଲିଙ୍କି
ସୁନାନାକି, ଫାଲ୍‌ଗୁନି ତିଥିର କନ୍ୟା
ଯାହା ଯାହା ମାଗିବୁ ତୁ ସବୁ ଦେବି ।

ବାବୁରେ ତୁ ଫେରିଆ ପାଖକୁ
ଭଲପାଇବାର ଏଇ ସୁରକ୍ଷିତ ବଳୟ ମଝିକୁ ।
ତୁ' ତ ମୋ ନିରୁତା ମନର ସଂକଳ୍ପର ଫଳ
ବୀଜମନ୍ତ୍ର ପ୍ରାରବ୍ଧ କାଳର ।

ଅଭିମାନ କରି ଚାଲିଗଲୁ
ଅଗ୍ନାଅଗ୍ନି ବନସ୍ତକୁ
ଯେଉଁଠାରେ ପ୍ରମତ୍ତଗୟଳ
ଶୋଷିନେବ ତୋର ସବୁ ସୁକୁମାର ପଣ ।
ବାବୁରେ ତୁ ଫେରିଆ ପାଖକୁ
ଭଲପାଇବାର ଏଇ ସବୁଜ ଭୂମିକୁ ।

•

# ଘର (୫)

ଅଣ୍ଟା ଆଉ ପାଦରେ ଦରଜଧରି
ଏକା ଏକା ଏଇଘରେ ଥିବି
କଲିଂବେଲ୍ ବାଜିଚାଲୁଥିବ
କେହି ନଥିବେ ପାଖରେ
ଏପରିକି ବିଲେଇଟିଏ ବି ।

ତମେ ଥିବ ପ୍ରବାସରେ
ପୁଅଝିଅ ନିଜ ନିଜ ବାଟରେ ।
ଅଣ୍ଟା ଆଉ ପାଦରେ ଦରଜଧରି
ଏକା ଏକା ବଂଚୁଥିବି ଏଇଘରେ ।

ବ୍ୟାସ ସରୋବରର ଜୀବନ ଭିତରେ
ସାରାକ୍ଷଣ ଅପେକ୍ଷାରେ ଥିବି
କେତେବେଳେ ଦକ୍ଷିଣ ଝରକା ଦେଇ
ଖୁବ୍ ଧୀର ପବନ ବହିବ
ଆଗପରି ଘରଟି ଆଉଥରେ
ସ୍ୱପ୍ନରେ ବିଭୋର ହେବ ।

ତମେ ଫେରିବ ପ୍ରବାସରୁ
ଝିଅ ତା'ର ପ୍ରିୟଜନ ପାଖରୁ ।
ମଲ୍ଲି ମହକରେ
ଶାଗଖରଡା ବାସ୍ନାରେ
ଘରର କୋଣ ଅନୁକୋଣ
ମହକି ଉଠିବ ।

ଅନର୍ଗଳ ଗପର ଗଜରା ମାଳରେ
ଖାଇବା ଟେବୁଲ୍ ଆଗପରି
ମୁଖର ହେବ ।

ଛାତିରେ କିଛି ଦରଜ ନଥିବ
ଅଣ୍ଟା ଭଲ ହୋଇଯାଇଥିବ
ଘରଟି ପୁଣି ପୂରି ଉଠିବ
ପୁଅଝିଅଙ୍କ
ନାନାବାୟା ଗୀତରେ ।

•

## କବିର ମାଆ

ମାଆ ଆଗରୁ ଜାଣି ନଥାଏ
ସେ ଜଣେ କବିକୁ ଜନ୍ମଦେବ ବୋଲି ।
ମାଆ ତ ଚିରକାଳ ମାଆଟିଏ
ସେ କେମିନ୍ତି ବୁଝନ୍ତା
କବିର ମାଆହେବା
ସୌଭାଗ୍ୟର କି ଦୁର୍ଭାଗ୍ୟର ।

ମାଆ କେବଳ ଚିହ୍ନାଇପାରେ
ଭଲପାଇବାର ଛଳଛଳ ନଈଟିକୁ
ଆବେଗ ଭର୍ତ୍ତି ଫୁଲଗଛଟିକୁ ।

ପ୍ରେମିକାର ଚାହାଁଣି ଭିତରେ
ମାଆଟିଏ ଛପିଥାଏ ବୋଲି
ଅର୍ଥମୟ ହୋଇଯାଏ ଜୀବନ ।

ମାଆ ଆଗରୁ ଜାଣିନଥାଏ
ସେ ଜଣେ କବିକୁ ଜନ୍ମଦେବ ବୋଲି ।
ସବୁ ମାଆ ଭିତରେ
ଈଶ୍ୱରୀଟିଏ
ସବୁ ପ୍ରେମିକା ଭିତରେ
ନିଷ୍କପଟ ମାଆଟିଏ ଲୁଚିଥାଏ ।

କବିର ରକ୍ତକଣିକାରେ
ମାଆର ଭଲପାଇବା
ଦୂର ଗହୀରର ଅନ୍ଧାର ଭିତରୁ
ମିଞ୍ଜିମିଞ୍ଜି ଲଣ୍ଠନଟିଏ ହୋଇ ଜଳି ଉଠେ ।

ଲଣ୍ଠନର କ୍ଷୀଣ ଆଲୁଅ ପାଖରେ
ମାଆ ଦେବୀ ପରି ବସିଥାଏ
ମୋତେ ଅପେକ୍ଷା କରି ।
ଦୂର ଗାଁର ଆଲୁଅ ପାଖକୁ ଫେରିଯିବି
ଘରର ମୁଖଶାଳାରେ ଘଡ଼ିଏ ବସିବି ।

•

## ମୁଁ ସେଦିନ ନଥିଲେ ବି

ମୁଁ ସେଦିନ ନଥିଲେ ବି
ମୋ କବିତା ତ ଥିବ
ଗୀତ ଥିବ ।

ସୂର୍ଯ୍ୟ ଆଡକୁ ମୁହଁକରି ଛିଡ଼ା ହୋଇଥିବା
କନିଅର ଗଛଟିଏ ଥିବ ।
ପୁରୁଣା ଚିଠିସବୁ
ପେଡି ଲୁଗାପରି ଆଲମାରିରେ
ସେମିତି ସାଇତାଥିବ ।
ମୁଁ ସେଦିନ ନଥିଲେ ବି
ମୋ କବିତା ତ ଥିବ ।

ପଢ଼ାଟେବୁଲ ଉପରେ
ପ୍ରିୟ ବହିମାନେ
ଆଗପରି ସୁସଜ୍ଜିତ ଥିବେ ।

ଦୁଇ ଆଖିରେ ଛୁଆଁଇଦେବ
ମୋ କବିତାଖାତା
ଆସ୍ତେକରି ତା' ଉପରୁ ଧୂଳି ଝାଡ଼ିଦେବ ।

ହୃଦୟ ଭିତରୁ ତମ ଖୁବ୍ ଧୀରେ
ସୁଗନ୍ଧିତ ପବନ ବହିବ ।
ମୁଁ ସେଦିନ ନଥିଲେ ବି
ମୋ କବିତା ଥିବ
ମୋ ଗୀତ ଥିବ ।

•

## ତୁମକୁ କହିନି

କାଲି ସାରାରାତି
ଶୋଇନି କାହିଁକି
ତୁମକୁ କହିନି ।

ମେଞ୍ଚା ମେଞ୍ଚା ଅନ୍ଧାର ଭିତରେ
କେଉଁ ଅଦୃଶ୍ୟ ଲୋମଶ ହାତ
ମୋତେ ବାରମ୍ବାର ଆସି ଡାକୁଥିଲା ।
କାଲି ସାରାରାତି ଝର୍କା ଖୋଲାଥିଲା
ସାରାରାତି ପେଚା ରାବୁଥିଲା ।

ଭୈରବୀ ରାଗର ଅସ୍ପଷ୍ଟ ସ୍ୱରଟି
ରହି ରହି ଶୁଭୁଥିଲା
ପୁଣି ଶୁଭୁ ନଥିଲା ।

କାଲି ସାରାରାତି ଆଖିପତା ପଡି ନାହିଁ
ସୁନାରଙ୍ଗଶାଢ଼ି ପିନ୍ଧି
ନିମ୍ବଗଛ ଅନ୍ଧାର ମୂଳରେ
ମାମା ପରି ଜଣେ କିଏ ଛିଡ଼ା ହୋଇଥିଲା ।

ସାରାରାତି ବର୍ଷାର ଘୁଙ୍ଗୁର ଶୁଭୁଥିଲା
କାନ୍ଥଘଣ୍ଟା ଖୁବ୍ ଚାପାସ୍ୱରରେ କହୁଥିଲା
ଉଠ, ଉଠିପଡ
ଜୀବନର ଘଡ଼ି ଆଉ ଡେରି ନାହିଁ ।
କାଲି ସାରାରାତି ଶୋଇନି କାହିଁକି
ତୁମକୁ କହିନି ।

•

## କେବେ ଫେରିବ ବନବାସରୁ

କେବେ ଫେରିବ ବନବାସରୁ
ଫେରିଲେ ସାଙ୍ଗହୋଇ ଯିବା ପୁରୀ ।
ବହୁଦିନରୁ ସୂର୍ଯ୍ୟୋଦୟ ଦେଖିନି
ଏକାଠି ଦେଖିବା
ସୂର୍ଯ୍ୟୋଦୟ ଆଉ ସୂର୍ଯ୍ୟାସ୍ତ ।

ତୁମେ ବନବାସରୁ ଫେରିଲେ
ଗାଁ ପୋଖରୀରୁ ମାଛ ଧରାଯିବ ।
ମହାଦେବଙ୍କ ପାଖରେ
ଶହେ ଆଠ ଚମ୍ପା ସହ
ଅଭିଷେକ ହେବ ।

ଏକାନ୍ତରେ ପଚାରିବି
ବନବାସରେ କେମିତି ଥିଲ ।
ମାୟାରାବଣ, ସୂର୍ପଣଖା
ତମ ଆଗରେ ଇନ୍ଦ୍ରଧନୁ ଆଙ୍କୁ ନଥିଲେ ?
ଆଜି ଭାରି ଶୁଖିଲା ଦିଶୁଛ
ଚାଲ ଗାଁକୁ ଫେରିଯିବା ।
ଭରପୂର ମହୁବସାପରି ଗାଁ'ର ଜୀବନ
କୁହ, କେବେ ଫେରିବ ବନବାସରୁ ।

•

## ଘର (୬)

ଅଣ୍ଟା ଆଉ ପାଦରେ ଦରଜ ଧରି
ଲୋକଟି ଘର ଆଡକୁ ଅନାଉଥାଏ ।

ସୂର୍ଯ୍ୟ ଆସେ ପୁଣି ସୂର୍ଯ୍ୟ ଚାଲିଯାଏ
ଜହ୍ନ ଆସେ ପୁଣି ଜହ୍ନ ଚାଲିଯାଏ
ଅଣ୍ଟା ଆଉ ଛାତିରେ ଦରଜ ଧରି
ଲୋକଟି ଘରଟିକୁ ଦେଖୁଥାଏ ।

କେତେ ସ୍ମୃତିରେ ସଜଳ ଘରଟି
କେତେ ବର୍ଣ୍ଣମୟ ଦୁଃଖକୁ
ଅଣ୍ଟିରେ ପୂରାଇ ରଖିଥିବା ଘରଟି
କାତର ହୋଇ ଅନାଇଥାଏ ।

ଅଣ୍ଟା ଆଉ ଛାତିରେ ଦରଜ ଧରି
ଲୋକଟି ଘରଟିକୁ
ଦେଖିଲାଗିଥାଏ ।

•

## କବି ବୋଲି ଡାକିଦେଇ

କବି ବୋଲି ଡାକିଦେଇ
ମୁଗ୍ଧ କରିଦେଲୁ,
କବି କହି ମୋ ଭିତରର
ସୁକୁମାର ଭାବନାକୁ
ଆସ୍ତେ ଛୁଇଁଦେଲୁ,
ସାରା ଅନୁଭବ ମୋର
ସୁବାସିତ ହୋଇଗଲା
ଆବେଗରେ ।

ତାରାଭର୍ତ୍ତି ଆକାଶକୁ
ଅନାଇ ରହିଲି
ଅପଲକ ଆଖିରେ ।

କବିତା ଲେଖିବା
ଆଉ କବି ଭାବରେ ଜିଇବା
ଦୁଇଟି ଅଲଗା କଥା,
କେତେବେଳେ
ଲହୁଲୁହାଣ ତ
କେତେବେଳେ
ମହୁମୁହାଣ ।

ଅନନ୍ତ ସମୟ ଧରି
ମୁଁ ମାତିଛି
ଶବ୍ଦର ଖେଳରେ,
କାଳେ କେତେବେଳେ
ଶବ୍ଦର ପ୍ରତିମାଟିଏ
ଆଙ୍କି ହୋଇଯିବ
ମୋ ଚେତନାରେ ।

ମୁଁ ତ ଆବେଗଭର୍ତ୍ତି ଗଛଟିଏ,
କେତେବେଳେ
ଫୁଲପତ୍ର ଏକାକାର ତ
କେତେବେଳେ
ଲହୁ-ଲୁହ ଏକାକାର ।

ତଥାପି ଜୀବନ
ଭଲଲାଗେ ବୋଲି ତ
ଏତେ ସ୍ୱପ୍ନ ଦେଖେ
ଲୁହ ଆଉ ଅଭିମାନ

ଏକାକାର ହୋଇଯାଏ
ଗୋଟିଏ ବିନ୍ଦୁରେ ।

ମୋର ଏହି ନିରୀହ ଅନୁଭବକୁ
କେମିତି ବୁଝିଲୁ ?
କବି ବୋଲି
କେହି ନ ଶୁଣିଲା ପରି
ଆସ୍ତେ ଡାକିଦେଲୁ ।

•

## ଆଜି ତୁମ ଜନ୍ମଦିନ

ଅନନ୍ତ ସମୟ ଏମିତି କଟିଯାଏ
ଅନ୍ଧାରରେ ବସି ବସି ଭାବନା ଭିତରେ
ଏକା ଏକା ।

ଆଜି ତମ ଜନ୍ମଦିନ
କୁମ୍ଭ ସଂକ୍ରାନ୍ତିର
ସତେଜ ସକାଳ ।
ଆଜି ତୁମ ଜନ୍ମଦିନ
ମୁଁ ଛାଡି ଆସିଛି
ମୋ ସହରର ଅଶ୍ଳୀଳ କୋଳାହଳ
ବ୍ୟସ୍ତତାର ଅଯଥା ଜଞ୍ଜାଳ ।

ଆଜି ତମ ଜନ୍ମଦିନ
କୁମ୍ଭ ସଂକ୍ରାନ୍ତିର
କାଲି ବଡ଼ିଭୋର
ଏଠାରୁ ମୁଁ ଚାଲିଯିବି
ଟ୍ରେନ୍‌ରେ ।

ଟ୍ରେନ୍‌ରେ ଗଲାବେଳେ
ମୁଁ ଏକାକାର ହୋଇଯିବି
ମୃତ୍ୟୁ ଚେତନାରେ ।

ତୁମ ଅଙ୍ଗୀକାର ଭିତରେ
ମୁଁ ଭୁଲିଯାଇଥିଲି
ମୋ ଚାରିପାଖରେ ଈର୍ଷାର ବଳୟ ।

ଶୂନ୍‌ଶାନ୍ ରାତିରେ
ଆର୍ତ୍ତସ୍ୱର ଦୂରବର୍ତ୍ତୀ ପେଚାର
ଆଜି ତମ ଜନ୍ମଦିନ ।

ଭାରି ଭଲଲାଗୁଛି ଏଇ ମୃଦୁ ମଧୁର ସ୍ପନ୍ଦନ
ତୁମ ବଗିଚାର ।

ଏତେ ଦୂରରୁ ମୁଁ ଆସିଥିଲି
ତମ ସଙ୍ଗେ ଦେଖା ହେଲା ନାହିଁ ।
ତମେ କେଉଁ ଭିନ୍ନ ଜଗତରେ ବ୍ୟସ୍ତଥିଲ
ଜଣାଇଲ ନାହିଁ ।

ବଗିଚାରେ ଏକା ଏକା ବସି ବସି
ସରିଗଲା ବେଳ
ଆଜି ତମ ଜନ୍ମଦିନ ।
କାଲି ସକାଳେ ଏଠାରୁ ମୁଁ ଚାଲିଯିବି
ତମ ସଙ୍ଗେ ଦେଖା ହେବ ନାହିଁ
ଗୋଲାପ, ଡାଲିଆ ଆଉ ବୋଗେନ୍‌ଭିଲାର
ସବୁ ସଂପର୍କର ଖେଳ
ନିଭୃତ ପ୍ରେମପରି ସୁନ୍ଦର ତମ ବଗିଚା ଓ ଘର
ଆଜି ତମ ଜନ୍ମଦିନ ।

ଅନନ୍ତ ସମୟ ମୋର କଟିଯାଉ
ଏମିତି ବସି ବସି ଏକୁଟିଆ

ତମେ କ'ଣ ଜାଣିପାରିବ
ମୁଁ ଏମିତି ବସିଛି ବୋଲି
ତୁମ ବଗିଚାରେ
ମଧ୍ୟବିତ୍ତ ଅସହାୟତା
ମୋ ଚାରିପାଖରେ ।

•

## ସ୍ୱପ୍ନଟିଏ ତିଆରି ହୋଇଥିଲା ଦିନେ

ସ୍ୱପ୍ନଟିଏ ତିଆରି ହୋଇଥିଲା ଦିନେ
ଏଇ ମାଟିରେ
ମହାନନ୍ଦା, ମହାନଦୀ, ବ୍ରହ୍ମପୁତ୍ର
ଆସାମର ଚା' ବଗିଚାରେ
ଖଟିଖିଆ ମଣିଷର ଶୁଖିଲା ଓଠରେ ।
ସ୍ୱପ୍ନଟିଏ ତିଆରି ହୋଇଥିଲା ଦିନେ
ଏ ଦେଶର ସାବରମତୀରେ ।

ଆଜି ଏଇ ପୂର୍ବାଶାରେ
କାହାର ସ୍ୱପ୍ନର ଛାଇ
ଆଜି ଏଇ ପ୍ରଭାତରେ, କାହାର ସ୍ୱପ୍ନର ସ୍ୱର
କେଉଁ ତାନ୍ତିଆଟୋପି, ଲକ୍ଷ୍ମୀବାଈ
ଚାଖିଖୁଣ୍ଟିଆରେ
ଗାନ୍ଧୀ, ଗୋପବନ୍ଧୁ, ଅରବିନ୍ଦ,
ବାଘାଯତୀନ୍‌ର !

ଆଜି ନୂଆ ଚେତନାର ଅଭିଯାତ୍ରା
ଆରମ୍ଭର ଶୁଭ ସନ୍ଧିକ୍ଷଣ
କେଉଁଠୁ ଶୁଭୁଛି ଏଇ ରାମ୍‌ଧୂନ୍, ମନ୍ତ୍ରପରି
ସାବରମତୀରୁ
ଅବା ଜାଲିଓ୍ୱାନାବାଗ୍‌ରୁ !

ସତ୍ୟାଗ୍ରହୀ ଜଣେ ଜଣେ ଆସୁଛନ୍ତି
ସେମାନଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ
ନିରବଧି କାଳଭିତରୁ ।
କାନଡେରି ଶୁଣ
ମନ୍ତ୍ରପରି ଶୁଭୁଛି ସେମାନଙ୍କ ଆସିବାର ପାଦଶବ୍ଦ ।

ଆଜି ବୋଧେ
ନୂଆ ଚେତନାର ଏଇ ଅଭିଯାତ୍ରା
ଆରମ୍ଭର ଶୁଭ ସନ୍ଧିକ୍ଷଣ ।

•

## ଶବ୍ଦଟିଏ ପ୍ରତିମାଟିଏ

ମାତୃଭାଷାକୁ ବଞ୍ଚାଇ ରଖିବାର କଳା
କବି ଜାଣେ ।
କବି ଜାଣେ ମାତୃଭାଷାର
ମୟୂରକଣ୍ଠୀ ପକ୍ଷୀଟିକୁ
କିପରି ଯତ୍ନରେ ସାଇତାଯାଏ ।

ଅହୋରାତ୍ର ଘାରି ହେଉଥିବା ଦୁର୍ଗଭିତରୁ
ଶବ୍ଦର ପ୍ରତିମାଟିକୁ
କବି ନିର୍ମାଣ କରୁଥାଏ
ସ୍ୱେଦ ଦେଇ, ରକ୍ତ ଦେଇ
ସବୁ ଅହଂକାରକୁ ଏକାଠିକରି
ମାତୃଭାଷାକୁ ବଂଚାଇ ରଖିବାର କଳା
କବି ଜାଣେ ।

ଶବ୍ଦଟିଏ କବି ପାଖରେ
ମୟୂରକଣ୍ଠୀ ପାଲଟିଯାଏ ।

ଭାଷାଟିଏ କବି ପାଖରେ
ମର୍ଯ୍ୟାଦାବନ୍ତ ମହିମାରେ
ଅନ୍ତରୀକ୍ଷ ପର୍ଯ୍ୟନ୍ତ ବ୍ୟାପିଯାଏ ।

ଶିଶିରସିକ୍ତ ଧାନକେଣ୍ଡା ଭିତରୁ
ପ୍ରତିଧ୍ୱନିତ ହୋଇ ଉଠେ କବିର ଭାଷା ଭାବନା ।
ଶବ୍ଦ ରୂପାନ୍ତରିତ ହୋଇଯାଏ
ପ୍ରତିମାରେ
ଭାଷା ରୂପାନ୍ତରିତ ହୋଇଯାଏ ମନ୍ତ୍ରରେ ।

ମାତୃଭାଷାକୁ ବଞ୍ଚାଇ ରଖିବାର କଳା
କବି ଜାଣେ ।
ସେ ଇତିହାସ ନ ହୋଇ ମଧ୍ୟ ଇତିହାସ
ସେ ଈଶ୍ୱର ନ ହୋଇ ମଧ୍ୟ ଈଶ୍ୱର
ଭାଷା ଭାବନା କାଳଜୟୀ ହୋଇଯାଏ
ଇତିହାସର ଗଡ଼ଖାଇ ଭିତରୁ
ଶବ୍ଦଟିଏ ପ୍ରତିମାରେ
ରୂପାନ୍ତରିତ ହୋଇସାରିଥାଏ ।

•

## ବାହୁଡ଼ିବାର ବେଳ

ବାହୁଡ଼ିବାର ବେଳ ହେଲେ
କିଏ ଅଟକାଇ ପାରିବ କାହାକୁ ?
ତମେ ମୋତେ ନା ମୁଁ ତୁମକୁ ।

ଝଲ୍‌ମଲ ସଂସାରର ଲୋଡ଼ିବା ପଣରେ
କେବେ ବିହ୍ୱଳ ହୋଇଯାଇଛି ତ
କେବେ ମୁହଁ ଶୁଖାଇ ବସିଛି ଅନ୍ଧାରରେ ।

ଏଇ ଘର ମୋର ବୋଲି
ଭାବିବାକୁ ଭଲଲାଗିଛି ବାରମ୍ବାର ।
ଫୁଲକୁଣ୍ଡରୁ ଶୁଖିଲାପତ୍ର ଝାଡ଼ିଲା ବେଳେ
ଏଇ ଘର ମୋର ବୋଲି ଭାବିବାକୁ ଭଲ ଲାଗିଛି ବାରମ୍ବାର ।

ଆଲମାରିରେ ସଜା ହୋଇଥିବା ବହି
ପଢ଼ା ଟେବୁଲ୍‌ରେ ପଡ଼ିସାରିଥିବା ଚିଠି
ଆଉଥରେ ପଢ଼ିଛି ।
ନରମ ଆଲୁଅରେ
ବାଲ୍‌କୋନିରେ ବସିଛି ଏକା ଏକା
କେବେ ମୁହଁ ଶୁଖାଇ ବସିଛି
ଅନ୍ଧାରରେ ତ
କେବେ ଉଦାସୀନତାରେ ଘାରିହୋଇଛି ।

ହଠାତ୍ ଆଜି ଯିବା କଥା କେମିତି ଜାଣିଲ ଯେ
ଅଟକାଉଛ ।
ବାହୁଡିବାର ବେଳ ହେଲେ କିଏ ଅଟକାଇ ପାରିବ କାହାକୁ
ତମେ ମୋତେ ନା
ମୁଁ ତୁମକୁ ?

•

## କିଛି ବି ବଦଳି ନାହିଁ

ମୁଁ ଯେଉଁଠି ଥିଲି ଠିକ୍ ସେଇଠି ଅଛି
କିଛି ବି ବଦଳି ନାହିଁ
ନା ଠିକଣା
ନା ଘରର ମାନଚିତ୍ର
ନା ବଗିଚାର ମହୋତ୍ସବ ।

ଏଇ ବାଟଦେଇ
ରକ୍ତନଦୀ ପାରିହେଲାବେଳେ

ନିର୍ବାକ୍ ହୋଇଯାଇଛି
ବୈରାଗ୍ୟ ଆଜ ବିଷାଦରେ ।

ତପସ୍ୟାରେ ତପସ୍ୟାରେ
ଗଙ୍ଗାକୁ ଡାକିବା ପାଇଁ
ଅହୋରାତ୍ର ପ୍ରସ୍ତୁତ ହୋଇଛି ।
ଏଠାରୁ ଯେ ସ୍ୱର୍ଗଦ୍ୱାର ବେଶୀଦୂର ନୁହେଁ
ସେ କଥା ମୁଁ ଜାଣେ ।

ମୋ ପୂର୍ବଜଙ୍କ ଆତ୍ମାରେ
ଏଇ ବାଟ ଆଲୋକିତ ।
ଏଇ ଅଗ୍ନିପଥ ଦେଇ
ଚାଲୁଥିଲା ବେଳେ
ଚତୁର୍ଦ୍ଦିଗ ବର୍ଣମୟ ମନେହୁଏ
ଅସ୍ଫୁଟ କାକଳି
ଶୁଣାଯାଏ ଚାରିଆଡୁ
ତପସ୍ୟାରେ
ଅଭୀପ୍ସାରେ
ବହ୍ନିମୟ ଏଇ ବାଟ ।

ମୁଁ ଏଇଠି ଅଛି
କିଛି ବି ବଦଳି ନାହିଁ
ନା ଠିକଣା
ନା ଘରର ମାନଚିତ୍ର ।
ଖାଲି ଯାହା କରୁଣ ସୂର୍ଯ୍ୟାସ୍ତଟିଏ
ଥରିଉଠେ ବେଳେବେଳେ
ଘରର ମାନଚିତ୍ର ଉପରେ ।

•

## ଦେବୀମାନେ ସ୍ୱୟଂ ମନୋମୟୀ

ଆଜିକାଲି ଡ଼େରି ରାତିରେ
ଘରକୁ ଫେରିଲେ
ଆଖିମାନେ ନିଅନ ଆଲୁଅ ପରି
ଅକାରଣେ ଅନାନ୍ତି କାହିଁକି ?

ଆଜିକାଲି ଡ଼େରି ରାତିରେ
ଘରକୁ ଫେରିଲେ
ଈର୍ଷାମାନେ ଏମିତି
ପଛରେ ଗୋଡ଼ାଇ ଆସନ୍ତି କାହିଁକି ?

ଡେରି ରାତିରେ
ମାଆ ଅପେକ୍ଷା କରି ବସିଥାଏ
ପରଳ ଆଖିରେ ।
ବଡ଼ିଭୋର ଶୀତରେ
କାହା ନିଦ ଭାଙ୍ଗିଯାଏ ।

ଚା' ଫୁଟୁଥାଏ କେଟ୍‌ଲିରେ
କେଟ୍‌ଲିରୁ ବାମ୍ଫ ଉଠୁଥାଏ ।
ପେଙ୍କୁଆ ଆଖିରେ
ମା' ଚା' କରି ଡାକୁଥାଏ ।
ମାଆର ହାତ ତିଆରି ଚା'
ଅମୃତପରି ମନେହୁଏ ।

ପେଙ୍କୁଆ ଆଖିରେ ମାଆ ଚାହିଁଥାଏ
ରେଡ଼ିଓର ମାଙ୍ଗଳିକ ସାହାନାଇ ପରି
ଗାଈମାନେ ଡ଼ାକନ୍ତି ମାଆକୁ ।
ପରଳମଖା ପେଙ୍କୁଆ ଆଖିରେ
ମା' ଅନ୍ୟମନସ୍କ ହୋଇ ଅନାଇଥାଏ ।

ମା'ମୟ ହୋଇଯାଏ ସକାଳ
ସ୍ନେହରେ ବତୁରା ସକାଳ ।

କେତେଥର ଭାବିଛି
ମାଆକୁ କହନ୍ତି
କାଲି ସାରା ରାତି ଶୋଇନାହିଁ
ତୋରି କଥାରେ ଭର୍ତ୍ତି କବିତା ଲେଖିଛି ।
ଲେଖିଛି ମୁଁ
ତୁ କେମିତି ମନୋମୟୀ ଦେବୀ
ତୋର ଏଇ ଆହ୍ଲାଦିନୀ ଦେବୀଗୁଣ
ମୋଠାରୁ ଅଧିକ କିଏ ବା ବୁଝିଛି ।

ମନେମନେ ତୋତେ ନେଇ
ଭାରତର ସବୁ ତୀର୍ଥସ୍ଥାନ ବୁଲାଇଛି
ମନେମନେ ତୋ ମଥାରେ
ପିନ୍ଧାଇଛି ଦେବୀର ମୁକୁଟ ।
ଦେବୀମାନେ ସ୍ୱୟଂ ମନୋମୟୀ
ସେମାନଙ୍କ ଇଚ୍ଛା କ'ଣ
ଅନିଚ୍ଛା ବା କ'ଣ ?

•

## ଫାଲ୍‌ଗୁନି ତିଥିର ଝିଅ

ସେଦିନର ସେଇ ଛୋଟ ଝିଅଟି
ଅରଣ୍ୟର ଗଛପରି
ହଠାତ୍ ବଡ଼ ହୋଇଗଲା ଦିନେ ।

ସାରାରାତି ବହିପଢ଼ାରେ
ସାରାରାତି ଅକ୍ଷରର କୁହୁକ ଭିତରେ
ସାରାରାତି ପରୀକ୍ଷାର ପ୍ରସ୍ତୁତି ଭିତରେ
ଭୋର ହୋଇଗଲା ତା'ର ।

ମାଆପରି କେତେବେଳେ
ଆକଟ କଲା ତ
କେତେବେଳେ ଅବୁଝା ପଣରେ
ତକିଆ ଭିଜାଇ ଦେଲା ଲୁହରେ ।

ଗଣେଶ ପୂଜା ଏବଂ ଶ୍ରୀପଞ୍ଚମୀରେ
ଝିଅଟି କେମିତି ଅଲଗା ଲାଗୁଥିଲା
ସରୋଜିନୀ ନାଇଡୁଙ୍କର 'ଭିଲେଜ୍ ସଙ୍ଗ୍'ର
ସେଇ ଛୋଟଝିଅଟି ପରି ।

କେବେ ପଦ୍ମ ପାଇଁ ତ
କେବେ କାଗଜଫୁଲ ପାଇଁ
ଅଝଟ କରୁଥିଲା ।

ଜୀବନକୁ ଭଲ ପାଉଥିଲା ବୋଲି
କେତେବେଳେ ମୁକ୍ତା ହୋଇଯାଉଥିଲା ତ
କେତେବେଳେ ଶାମୁକା ।

ପରଂପରାର ବୋଝ ମୁଣ୍ଡାଇ
ସେ କ୍ଳାନ୍ତ ହୋଇଯାଉଥିଲା ।
ଫାଲ୍‌ଗୁନି ତିଥିର ଝିଅଟି ଅରଣ୍ୟର ଗଛପରି
ହଠାତ୍ ଦିନେ ବଡ଼ ହୋଇଗଲା ।

ଝିଅ ପ୍ରବାସରୁ ଫେରିଲେ
ଛୋଟ ଛୋଟ ସଦାବିହାରୀ ଫୁଲରେ
ଘର ହସିଉଠିବ ।
ବହୁଦିନ ଧରି ବନ୍ଦ ହୋଇ ପଡିଥିବା
ଲୋକକଥାର ପେଡିଟିକୁ
ତା' ସାମ୍ନାରେ ଖୋଲିଦେବି ।

•

# ସେ ହିଁ ସୃଜନମୟୀ ବିଶ୍ୱରୂପା

ଫାଲ୍‌ଗୁନି ତିଥି ଏକ ପରିବ୍ୟାପ୍ତ ଆବେଗମୟ ମୁହୂର୍ତ୍ତର ଗଭୀର ଅନୁଭବ। ସେହି ତିଥିର ଅଭିମନ୍ତ୍ରିତା ସେ ଝିଅ। ଫାଲ୍‌ଗୁନି ତିଥିର ଝିଅ। ସ୍ଥିତପ୍ରଜ୍ଞତା ଯାହା ଚେତନାର ପରିଭାଷା। ନିଷ୍ଠା ଏବଂ ଧୈର୍ଯ୍ୟର ଯିଏ ଅଭିବନ୍ଦିତା। ସେ ହିଁ ସୃଜନମୟୀ ବିଶ୍ୱରୂପା। କେତେବେଳେ ଅନନ୍ତ ପ୍ରୀତିର ଆଦ୍ୟଶ୍ଳୋକ ତ କେତେବେଳେ ସବୁଜ ଆତ୍ମୀୟତାର କବି ସତ୍ତାଟିଏ। ସବୁଠାରେ ତା' ବିଭୋର ଭାବନାର ମହକ। ନିରବଧି ସମୟରେ ସ୍ଥିତପ୍ରଜ୍ଞ ଆତ୍ମସତ୍ତା। ଅମୃତର ଆଦ୍ୟ ଅଭିଷେକ ଭିତରେ ମୂର୍ତ୍ତକୁ ଅମୂର୍ତ୍ତ କରିପାରେ। ଶାମୁକାକୁ ସ୍ପନ୍ଦିତ କରି ମୁକ୍ତାର ସଞ୍ଚାର ହେଲା ପରି ତା' ସମର୍ପିତ ମୁଦ୍ରାର ପାପୁଲିରେ ଚହଟି ଉଠେ ଜୀବନ। ଠିକ୍ ଆଲୋକିତ ପୂର୍ବାଶା ଯେମିତି। ଅହୋରାତ୍ର ତା'ର ତପସ୍ୟା। ଅମୃତ ଅଭିଳାଷର ତପସ୍ୟା। ସେ ତପସ୍ୟା ଶ୍ୟାମଳ ସବୁଜିମାର ତପସ୍ୟା। ଭାଗୀରଥି ପରି ଉଚ୍ଛ୍ୱସିତ ଆବେଗରେ ପ୍ରେମର ଗଙ୍ଗାକୁ ପ୍ରବାହିତ କରିବାର ଉନ୍ମୁଖ ବ୍ୟାକୁଳତା। ଫାଲ୍‌ଗୁନି ତିଥିର ସେହି ସୂକ୍ଷ୍ମ ସତ୍ତାଟି ବିଶ୍ୱସତ୍ତାକୁ ନିଜ ଭିତରେ ଗୋପନ କରି ରଖିଛି। ସୁକୁମାର ଶୈଶବରେ ସେହି ସୃଜନଶୀଳ ଭାବନା ଟିକକ ବିଶ୍ୱାସ ଏବଂ ପ୍ରତ୍ୟୟ ସହିତ ଯୁକ୍ତ ହୋଇ ଘରର କୋଣ ଅନୁକୋଣରେ ସଞ୍ଚରିଯାଇଛି। ଏହି ନିବିଡ଼ତର ଉପଲବ୍ଧି ହିଁ ସେହି ଅଭିମନ୍ତ୍ରିତା ଫାଲ୍‌ଗୁନି ତିଥି। ଚରମ ସମ୍ଭାବନା ଏବଂ ଗଭୀର ଉପଲବ୍ଧି ହିଁ ତ ସେହି ଫାଲ୍‌ଗୁନି ତିଥିର ଝିଅଟି ଭିତରେ ଆଜି ମୂର୍ତ୍ତ।

•

# ଝିଅ ଶାଶୂଘର ଚାଲିଯିବ

ଝିଅ ଶାଶୂଘର ଚାଲିଯିବ
ସାଙ୍ଗରେ ନେଇଯିବ
ଚାବିଦିଆ କଣ୍ଢେଇ
ପିଲାଦିନ ଟିଫିନ୍ ବକ୍ସ
ଜନ୍ମଦିନର ଚୁମୁକିବସା ନାଲି ଫ୍ରକ୍ ।

ଝିଅ ଶାଶୂଘର ଚାଲିଗଲେ
ବଡ଼ ଏକୁଟିଆ ଲାଗିବ ।
ସୁଖ ଦୁଃଖ ବାଣ୍ଟିବା ପାଇଁ
ଅସହାୟତାକୁ ଆଉଁଶିବା ପାଇଁ
କେହି ନଥିବେ ପାଖରେ ।

ଆଉ ଥରେ ଆସିବ କହୁଛି ଝିଅ
ସିଏ ଆସିଲା ବେଳକୁ
ମୁଁଏଠି ନଥିବି ।
ମୋ ପଢ଼ା ଟେବୁଲର ବହି ଉପରେ
ପରସ୍ତେ ଧୂଳି ଜମି ଯାଇଥିବ ।

ତା' ପିଲାଦିନର ବୋକୀ କଣ୍ଢେଇଟି
ସେମିତି ଅନେଇଥିବ ଡବଡବ ଆଖିରେ ।
ଝିଅ ଶାଶୂଘର ଚାଲିଯିବ ।
ତା' ଲକ୍ଷ୍ମୀ ହାତର ଛୁଆଁରେ
ସେ ଘରର ମାନଚିତ୍ର ବଦଳିଯିବ ।

ପଦ୍ମଗନ୍ଧରେ ଭରି ଉଠିବ ଘରଦ୍ୱାର
ଭଲ ପାଇବାର ସୂକ୍ଷ୍ମସୂତାରେ
ସବୁ ହୃଦୟକୁ ଗୋଟିଏ ହୃଦୟ କରି ଦେବ
ଝିଅ ଶାଶୂଘର ଚାଲିଯିବ ।

ଅକାଳେ ସକାଳେ କେବେ କେମିତି
ବୁଲି ଆସିବ ଏ ଘରକୁ ।

ଝଡ଼ରେ ଟଳି ପଡ଼ିଥିବା
ତା' ପିଲାଦିନର ପ୍ରିୟ ପିଜୁଳି ଗଛଟିକୁ
ଟିକିଏ ଆଉଁଶି ଦେବ ।

ବହୁଦିନରୁ ଦେଖିନଥିବା ଟିକି ଟିକି ପାରାମାନଙ୍କୁ
ଅନାଇ ରହିବ ଆଖିରେ ଆଖିଏ ଆଗ୍ରହ ନେଇ ।
'କଙ୍କି ଧରଣ ମା' ମରଣ' କଥାଟିକୁ ସେ ଭୁଲି ସାରିଥିବ
ଝିଅ ଶାଶୂଘର ଚାଲିଯିବ ।
ତା' ଛୋଟ ଦିନର ଚୁମୁକିବସା ନାଲିଫ୍ରକ୍
ସେ ବୋକୀ କଣ୍ଢେଇଟିକୁ ବି ସାଙ୍ଗରେ ନେଇ ଯିବ ।

•

## ପାଖରେ ନଥାଏ

ଆଜିକାଲି ଝିଅ ପାଖରେ ଥାଇ ବି
ପାଖରେ ନଥାଏ ।
ଅନ୍ୟ କେଉଁ ଅରଣ୍ୟରେ
ଅନ୍ୟ କେଉଁ ଦ୍ୱୀପରେ
ଆଦିମାତା ପରି ଚୁପ୍‌ଚାପ୍ ବସିଥାଏ ।

କେତେବେଳେ ନିଆଁ
ପୋଉଁଥାଏ ତ
କେତେବେଳେ ନିଆଁକୁ କୋଳାଗ୍ରତ କରିଥାଏ ।
ଆଜିକାଲି ଝିଅ
ପାଖରେ ଥାଇ ବି ପାଖରେ ନଥାଏ ।

ବହୁତ କଥା ଦେଇପାରିନାହିଁ ତାକୁ
ଐଶ୍ୱର୍ଯ୍ୟମୟ ଶୈଶବ
ସୁକୁମାର ପିଲାଦିନ ।

ପୂଜାଛୁଟିରେ ଆସିବ ଲେଖିଛି
କେଉଁ ସୁଦୂର ପ୍ରତ୍ୟୟ ଭିତରେ
ଦୂରକୁ ଦୂରକୁ ଘୁଞ୍ଚିଯିବ ପୂଜାଛୁଟି
ଆସିଲେ ଦେଖିବ
ତା' ଶୈଶବର ଦିନ ସବୁ
ମୋ ଛାତି ଭିତରେ କେମିତି
ଦୀପ ହୋଇ ଜଳୁଛି ।

•

## ଏବେ ଫେରିବାକୁ ହେବ

ଏବେ ଫେରିବାକୁ ହେବ ଏଇଠୁ
ରେଶମୀ ସୂତାରେ ଗୁନ୍ଥା ସ୍ୱପ୍ନ ସବୁକୁ
ଶୀଘ୍ର ଶୀଘ୍ର ସାରିବାକୁ ହେବ ଏଥର ।

ଯେତେ ଯେତେ ହିସାବନିକାଶ
ଯେତେ ଅହଂକାର
ଗୋଟି ଗୋଟି କରି ରବରରେ
ଲିଭାଇ ଦେବାକୁ ହେବ ମନରୁ ।
ଏବେ ଫେରିବାର ବେଳ ହୋଇଗଲା ।

ଲଣ୍ଡନ ଦେଖାଇବା ପାଇଁ
କିଏ ଯିବ ସାଙ୍ଗରେ
ବାଟ ଅଧ ଯାଏ ।

ସମୟ ସହିତ ବୁଝାମଣା କରି ନ ପାରି
ଥକି ଯାଇଥିବା ପ୍ରିୟଜନମାନେ

ଆଢୁଆଳରେ ଥକ୍କା ହୋଇ
ବସି ପଡ଼ିଛନ୍ତି ।
କିଏ ଯିବ ସାଙ୍ଗରେ
ରାସ୍ତା ଶେଷ ଯାଏ ।
ଆଲୁଅ ଦେଖାଇବା ପାଇଁ
ମୁଁ ଯେ ବ୍ରତବଦ୍ଧ ମୋ ନିଜ ପାଖରେ
ବାଧ୍ୟ କରି କାହାରିକୁ
ନ ଡାକିବା ପାଇଁ ।

•

## ଯେଉଁ ଭୂମିରେ ସ୍ୱପ୍ନ ଦେଖୁଥିଲେ ଫକୀରମୋହନ

ସ୍ୱପ୍ନକୁ ଆହୁଲା କରି ବୁଢ଼ାବଳଙ୍ଗରେ
ଭସାଇ ଦେଉଥିଲେ ଦୂରକୁ
ଡାଲଚିନି ଲବଙ୍ଗ ଦ୍ୱୀପକୁ
ସେଇ ଭୂମିରେ ମୋର ଘର
ଯେଉଁ ଭୂମିରେ ସ୍ୱପ୍ନ ଦେଖୁଥିଲେ
ଫକୀରମୋହନ ।
ହୃଦୟ ଦେଇ, ସ୍ୱପ୍ନ ଦେଇ
ମୋ ଭାଷାକୁ ଗରିମାମୟ
କରିଗଲେ ଫକୀରମୋହନ ।

ମୋ ଭାଷା ସ୍ୱାଭିମାନୀ ମଣିଷର ଭାଷା
ଭାଷାର ସଉଧ ପରେ
ଅଭିଷିକ୍ତ ମୋ ଜାତିର ଆଶା ।

କବିତା ଗୋଟିଏ ସେତୁ
ସ୍ୱପ୍ନ ସହ, ଭାଷା ସହ
ଯୋଡ଼ିବାର ସୁବର୍ଣ୍ଣବଳୟ

ପଦ୍ମ ପୋଖରୀର ଗାଁ
ହଳଦୀ ପତ୍ରର ଗାଁ
ମଲ୍ଲିକାଶପୁର ।

ଧନ୍ୟ ତମେ ଫକୀରମୋହନ
ତମ ପାଇଁ ଧନ୍ୟ ହେଲା ଏଇ ମାଟି
ତୀର୍ଥ ଆଜି ମଲ୍ଲିକାଶପୁର ।

•

## କେଉଁ କବିତାର ବିଭୂତି

ହୃଦୟ ଭିତରେ ଲୁଚାଇ ରଖିଥିବା
ସୁକୁମାର ଚିଜଟାକୁ
କାହାରିକୁ ଦେଲ ନାହିଁ
ନିଜ ସାଙ୍ଗରେ ନେଇଗଲ ଶ୍ମଶାନକୁ
ଯିବାଯାଏ
ସମସ୍ତଙ୍କୁ ନିଅ ନିଅ ବୋଲି କହୁଥିଲ ।

କେଉଁ କବିତାର ବିଭୂତି ସେ
କେଉଁ ସ୍ୱପ୍ନର ସ୍ୱର୍ଣ୍ଣରେଣୁ ।

ବହୁଦିନ ହେବ ସୋରିଷ ଫୁଲର ମହୁକୁ
ଥଣ୍ଟରେ ଧରି
ପକ୍ଷୀଟିଏ ଉଡି ବୁଲୁଚି ମୋ ମନରେ ।

ସେଭଳି ଅଦ୍ଭୁତ ପକ୍ଷୀ
କେବେ କାହିଁ ଦେଖିନି ଆଗରୁ ।
ଫୁଲରେ ଆଜି କେଶର କାହିଁ ଯେ
କବି କେଶର ଖୋଜିଯିବ ବନସ୍ତକୁ ।

•

## ମୃତ୍ୟୁବାର୍ଷିକୀ

କାହାର ମୃତ୍ୟୁବାର୍ଷିକୀ ପାଳୁଛ
ମୁଁ ଯେ ମରିନାହିଁ ।
ଆତ୍ମା ମୋର ଚାରିଆଡ଼େ ସଞ୍ଚରି ଯାଇଛି
ସୁବର୍ଣ୍ଣରେଖା କୂଳର ଗାଁ'ରେ
ଧାନ ବିଲରେ, ମାର୍ଗଶିର ଗୁରୁବାରରେ ।

ମୁଁ ଯେ ମରିନାହିଁ
ଏତେ ଫୁଲ, ଏତେ ସଭା
ଏତେ କୋଳାହଳ
ମୁଁ ତ କେବେ ପସନ୍ଦ କରିନି
ପ୍ରତିବର୍ଷ ଏଇ ଦିନ ମନେପଡ଼େ ।

କାହିଁକି ମହୋତ୍ସବ
ମୋତେ ଟିକେ ନିର୍ଜ୍ଜନତା ଦିଅ
ମୁଁ ଯେ ମରି ନାହିଁ
କାହାର ମୃତ୍ୟୁବାର୍ଷିକୀ ? ?

•

## ହାତ ପାପୁଲିରେ ଜୀବନ

ଝିଅ କାନ୍ଦନା
ସୁନାନାକି ଝିଅ ମୋର କାନ୍ଦନା
ତୋ ହାତ ପାପୁଲିରେ ଦେଖ୍
ଜୀବନ କେମିତି ଝଲସି ଉଠୁଛି ।
ଭଲ ପାଇବାର ଝରଣା
ଅନବରତ ଝରି ଚାଲିଛି
ତୋ ଚାରି ପାଖରେ ।

ମହୁଫେଣା
ଭରିଯାଇଛି ମହୁରେ ।
ଦେଖ୍ ତୋ ମୁଗ୍ଧ ଶୈଶବର ଦିନ
ସବୁଜିମାରେ କେମିତି ଛାଇଯାଇଛି ।

ପ୍ରେମର ସୁଗନ୍ଧ ଭିତରେ
ତୁ ସଂଚରି ଯା ଦିଗରୁ ଦିଗନ୍ତ ।
ତୋ ହାତ ପାପୁଲିରେ ଆଜି
ଝଲସି ଉଠୁଛି ଜୀବନ ।

•

## ମୁଁ ନାହିଁ

ମୁଁ ନାହିଁ
କେଉଁଠି ବି ନାହିଁ
ସୁସଜ୍ଜିତ ବଗିଚାରେ
ଠାକୁର ଘରର ପରଦାର ଆଢୁଆଳେ
କ୍ଷେପଣାସ୍ତ୍ର ଘାଟିତଳେ
ଶୈଶବ ପରି ସୁନ୍ଦର
ପୋଖରୀ ହୁଡ଼ାରେ ।

ମୁଁ ନାହିଁ
କେଉଁଠି ବି ନାହିଁ ।

ସ୍ୱପ୍ନଟିକୁ ସୁରକ୍ଷିତ ରଖିବାକୁ ଯାଇ
ସାତ ପରସ୍ତ କନାରେ
ସରିଗଲା ବେଳ
ସ୍ମୃତିର ମଣିମୁକ୍ତା ସାଉଁଟୁ ସାଉଁଟୁ
ଶବ୍ଦ ପଛରେ ଦଉଡୁ ଦଉଡୁ
ସରିଗଲା ବେଳ

ସବୁଖାଲି ସମୟର ଖେଳ
ମୁଁ ନାହିଁ
କେଉଁଆଡେ ନାହିଁ ।

•

## ମୁଁ ଏକ ମୁହୂର୍ତ୍ତ

ମୁଁ ଏକ ମୁହୂର୍ତ୍ତ
ସ୍ୱର୍ଣ୍ଣମୟ ଉଜ୍ଜ୍ୱଳ ମୁହୂର୍ତ୍ତ
ଏତେ ଦିନ ଧରି ଯାହା ଖୋଜୁଥିଲି
ଆଜି ସେଇ ପାଇବାର ଲଗ୍ନ
ଅମୃତଲଗ୍ନ ।

ମୃତ୍ୟୁବାର୍ଷିକୀର କଥା
ଭୁଲିଯିବି
ଶୈଶବର ସ୍ୱପ୍ନ ଆଜି
ହାତପାଆନ୍ତାରେ ।

ଜେଏନ୍‌ୟୁ ପାଠାଗାର
ସ୍ୱପ୍ନର ବଳୟକୁ
ମହିମା ମଣ୍ଡିତ କରିଦେଲା ।

ସବୁ ଘଟଣା ଦୁର୍ଘଟଣା
ଆପେ ଆପେ ହଜିଗଲା ।
ମୟୂର ନାଚର ଭୂମି
ଦଳ ଦଳ ପାରାବତ
ସ୍ତବ୍ଧ ହୋଇଗଲା ।

ମୁଁ ଏକ ମୁହୂର୍ତ୍ତ
ସ୍ୱର୍ଣ୍ଣମୟ ଉଜ୍ଜ୍ୱଳ ମୁହୂର୍ତ୍ତ ।
ସରସ୍ୱତୀ ଆରାଧାନା ଭୂମି

ଜେଏନୟୁ ପାଠାଗାର
ଅଦୂରେ ବିମାନ ଘାଟି
ଆକାଶରେ ଉଡ଼ାଣର ଶବ୍ଦ
ସବୁ ଶବ୍ଦ ସବୁ ସ୍ମୃତି
ସବୁ ଶୋକ ଆଜି ପରାଜିତ
ମୁଁ ଏକ ମୁହୂର୍ତ୍ତ
ସୁବର୍ଣ୍ଣ ମୁହୂର୍ତ୍ତ ।

ମୁଁ କେବଳ ବିନ୍ଦୁଟିଏ
ସମୟ ସ୍ରୋତରେ
ମୁଁ ସଂପୂର୍ଣ୍ଣ ଆଲୋକିତ
ଅନ୍ଧାର ଭିତରେ ।

ମୁଁ ଏକ ନୂତନ ଦିଗନ୍ତ
ଅସଂପୂର୍ଣ୍ଣ ବିନ୍ଦୁ ନୁହେଁ
ଶୋକାକୁଳ ସମୟ ବି ନୁହେଁ
ମୁଁ ଏକ ସୁବର୍ଣ୍ଣ ବଳୟ
କ୍ଷୟହୀନ କାଳହୀନ କାଳ ।

•

## ମୋ ଦେଶର ମାନଚିତ୍ର

ମୋ ହୃଦୟ ଭିତରେ ଆଜି
ମୋ ଦେଶର ସୁଗନ୍ଧ
ମୋ ଆତ୍ମା ଭିତରେ
ମୋ ଦେଶର ମାନଚିତ୍ର ।
ବରଫଘେରା ପାହାଡ଼ ଖୋଲର
କାରଗିଲ ଉପରେ
ମୋର ମୃତଦେହ ।

ଛାତି ପକେଟରେ
ପ୍ରିୟତମା ପତ୍ନୀର
ଅପଢ଼ା ଚିଠି ।

ସେ ଚିଠି ପଢ଼ିବି ଆସନ୍ତା ଜନ୍ମରେ
ସୈନିକ ହୋଇ ପୁଣି ଥରେ ।
ମୋ ହୃଦୟ ଭିତରେ
ମୋ ଦେଶର ସୁଗନ୍ଧ
ମୋ ଆତ୍ମା ଭିତରେ
ମୋ ଦେଶର ମାନଚିତ୍ର ।

•

## ବାରିପଦା

ରାଣୀବାଗର ସୁଗନ୍ଧ ଖୋଜିବାକୁ ଯାଇ
କେତେ ରାଜପୁତ୍ର
ପଥର ପାଲଟିଗଲେ ସେଦିନ ।

ଶାଳବଣର ଅନ୍ଧାର ଭିତରେ
ଅହିରାଜର ନିଃଶ୍ୱାସ
ଶେଷ କରି ଦେଇଛି
ଜୀବନର ସବୁ
ଶୁଭ ସମୟ ।

ସାତ ସମୁଦ୍ର ଶୋଷରେ
ଅସ୍ଥିର ବାରିପଦା
ଆଉ କଣ ବାକି ଅଛି ତୋ ପାଇଁ ।

ରକ୍ତକଇଁ ପୋଖରୀର
କଳାଘୁମୁର ପାଣି ଆଉ
ସାତ ତାଳ ପଙ୍କ ତଳେ

ସେଦିନ ପୋତି ହୋଇଗଲା
ମୋର ସବୁ ଐଶ୍ୱର୍ଯ୍ୟମୟ ସମୟ ।

ତୋ ଭିତରେ
କି ସୁଗନ୍ଧ ତୁ ଲୁଚାଇ ରଖିଛୁ ଯେ
କେତେ ବାଟୋଇ
ବାଇଆ ହୋଇ
ବାଟ ହୁଡି ଗଲେଣି
ସେ ଦିନରୁ ।
ବାରିପଦା
ଫେରାଇ ଦେ ମୋ ରାଜପୁତ୍ର
ମୋ ସୁବର୍ଣ୍ଣ ସମୟ
ଯାହାକୁ ପଥର କରି ଦେଇଛୁ ।

•

## ଶତାବ୍ଦୀର ଶେଷ ନାମ

କାହାକୁ ଫାଶୀ ଦେବ ତମେ
କେଉଁ ଦାରାକୁ
ଯିଏ ସହସ୍ରାବ୍ଦର
ଶେଷ ନାମ ହୋଇ
ଅତି ଦମ୍ଭର ସହ
ଛିଡ଼ା ହୋଇଛି ସାମ୍ନାରେ
ଗତକାଲି ସେ ଏଇଠି ଥିଲା
ଆମରି ଭିତରେ
ଭୋକିଲା ମଣିଷକୁ
ପାଣି ଆଞ୍ଜୁଳାଏ
ଟେକି ଦେଇଥିଲା ।

ଦାରା ଏକ ସମୟର ଶେଷ ଶବ୍ଦ
ଶତାବ୍ଦୀର ଶେଷନାମ
ଦେଖିଯାଅ ଏଇ
ନୂତନ ଶତାବ୍ଦୀକୁ
ସମୟର ଶେଷ ଶବ୍ଦକୁ ।

•

## ତମରି ଗାଁରେ ମୋ ଘର

ତମରି ଗାଁରେ ମୋ ଘର
ତମରି ଭୂମିରେ ମୋ ଘର
ଫକୀରମୋହନ ।

ମଲ୍ଲିକାଶପୁର ଆକାଶରେ
ବୁଢ଼ାବଳଙ୍ଗ ପଠାରେ
ଏବେ ମଧ୍ୟ କବିତାର ଗୁଣୁଗୁଣୁ ।

ବାଲେଶ୍ୱର ମାଟିରେ
ତମ ସ୍ୱପ୍ନକୁ ପୋତିଦେଇ
ଅପେକ୍ଷା କରୁଥିଲ
ସମ୍ଭ୍ରାନ୍ତ ଓଡ଼ିଆ ଭାଷା
ଭାରତର ଦିଗଦିଗନ୍ତ
ବ୍ୟାପିଯିବା
ବୁଢ଼ାବଳଙ୍ଗ ଦେଇ ଗଲାବେଳେ
ତମ ନିଷ୍କରୁଣ ପିଲାଦିନ
ଅକସ୍ମାତ୍ ଆଗରେ ଠିଆ ହୋଇଯାଏ ।

'ଅଝାଲ ସିଲାଇ ନିମକ ମହଲ' ତଳେ
ପିଲାଦିନ ଗୁମୁରି ଗୁମୁରି କାନ୍ଦେ ।

ମୋ ଭାଷା
ସ୍ୱାଭିମାନୀ ମଣିଷର ଭାଷା
ମୋ ଭାଷାର ମହକରେ ମୁଁ ଆଜି ବିଭୋର
ମୟୂରର ପୁଚ୍ଛପରି
ରଙ୍ଗ ମୋ ଭାଷାର ।
ତମରି ଗାଁରେ ମୋ ଘର ଫକୀରମୋହନ
ତମରି ଭୂମିରେ ମୋ ଘର ।

ଧନ୍ୟ ତମେ ଫକୀରମୋହନ
ତମ ପାଇଁ ଧନ୍ୟ ହେଲା ବାଲେଶ୍ୱର ମାଟି
ଧନ୍ୟ ଆଜି ମଲ୍ଲିକାଶପୁର ।

•

## ଘର ଫେରିବାର ବେଳ

ଘରକୁ ଫେରିବା ବେଳେ
ଗାଁ'କୁ ଫେରିବା ବେଳେ
ସବୁ ମନେପଡ଼ିଯାଏ ।

ମା'ର ଅଣ୍ଟା ଦରଜର ଔଷଧ
ଶ୍ୱାସ କଷ୍ଟରେ ଭୋଗୁଥିବା
ପିଇସୀର ଅସ୍ଥିରତା ।

ଘରକୁ ଫେରିବା ବେଳ ତ
ସବୁ ଅମୃତ ବେଳ ।
ତୁଚ୍ଛ ମନେହୁଏ ସେତେବେଳେ
ପଦପଦବୀର ଆକର୍ଷଣ ।
କୁର୍ଣ୍ଣିସକରା ମଣିଷର ଅଭିସନ୍ଧି ଖେଳ ।

ଘରକୁ ଫେରିବା ବେଳ ହିଁ
ସବୁ ଅମୃତ ବେଳ ।

ଘୁମନ୍ତ ଶିଶୁକୁ ଆଦରରେ
କୋଳେଇ ନେବାର ବେଳ
ପତ୍ନୀର ଆଖିକୁ
ଅପଲକ ଭାବରେ
ଅନାଇବାର ବେଳ ।

ଘରକୁ ଫେରିବା ମାନେ
ନିଜ ଭିତରକୁ ଫେରିବା
ନିଜ ସହ ନିଜେ
ସଙ୍ଗାତ ବସିବା ।

•

## କବିତା ଗୋଟିଏ ସେତୁ

କବିତା ଗୋଟିଏ ସେତୁ
ଦେଶ ସହ
ଭାଷା ସହ
ଯୋଡ଼ିବାର
ଅମୃତ ବଳୟ ।
ଆଗରେ ସୁବର୍ଣ୍ଣରେଖା
ଆଗରେ ମୋ ସୁବର୍ଣ୍ଣ ସମୟ
ଜୀବନ ଏଠାରେ ବଡ଼
ନିର୍ମମ ଅସ୍ଥିର ।
ଆଗରେ ତମରି ଗାଁ
ଚିତ୍ରିତ ସୁନ୍ଦର
ପଦ୍ମ ପୋଖରୀର ଗାଁ
ହଳଦୀ ହଳଦୀ ବାସୁଥିବା
ତମ ଗାଁ ।
ଟ୍ରେନ୍ ଝରକାରୁ
ତମ ଗାଁ ମନ୍ଦିରର ଚୂଡା ବାରି ହୁଏ

ଭଣ୍ଡେଶ୍ୱର ମହାଦେବ
ଚାରିଆଡ଼େ ଗୋଡ଼ିବାଣ
ଫୁଲର ଉତ୍ସବ
ବାଘାଯତୀନ୍ ହାଇସ୍କୁଲ
ସେପାଖେ ଶ୍ମଶାନ
ବଳଙ୍ଗ ତମରି ନଈ
ଗାଁ ନଈ ।

କାହିଁ କେତେ ଯୁଗରୁ
ମୋ ଛାତି ଭିତରେ
ସାଇତି ରଖିଛି ସେମିତି ।

ତମ ଗାଁ ସ୍ନିଗ୍ଧ ଜହ୍ନରାତି
ଭାରି ଭଲ ଲାଗେ ଭାବିବାକୁ
ତମ ଗାଁ ଧାଡ଼ି ଧାଡ଼ି ତାଳ ବଣ
ବଣମଲ୍ଲୀ ବଣବଲ୍ଲୀ ବାସୁଥିବା
ତମ ଗାଁ ଘର ।

ଏବେ ଫେରିବାକୁ ହେବ ଏଇଠୁ
ଆଉ ଟିକିଏ ଆଗରେ
ମଲ୍ଲୀକାଶପୁର
ଫକୀରମୋହନଙ୍କ
ସ୍ୱପ୍ନ ଆଉ ସ୍ମୃତିର ସହର ।

ମୁଁ ଫେରୁଛି ଟ୍ରେନ୍‌ରେ
ଭାରତର ବିଭିନ୍ନ ପ୍ରାନ୍ତରୁ
କବିତା ଗୋଟିଏ ସେତୁ
ଭାଷା ସହ
ଦେଶ ସହ
ଯୋଡ଼ିବାର ସୁବର୍ଣ୍ଣ ବଳୟ ।

ମୋ ଭାଷାର ସ୍ଥାପତ୍ୟରେ
କଳାର କୀର୍ତ୍ତିରେ
ବିମୁଗ୍ଧ ଭାରତବର୍ଷ ।
ମୋ ଭାଷା ସ୍ୱାଭିମାନୀ
ଓଡ଼ିଶାର ଭାଷା
ଭାଷାର ସାମ୍ରାଜ୍ୟ ପରେ
ଅଭିଷିକ୍ତ ମୋ ମାଟିର ଆଶା ।

•

## ମୁଁ ଏଠି ଥିଲି କିଛି ଦିନ

ମେଘ ସହ
ଆବେଗରେ
ଥପ୍ ଥପ୍ ଜଳବିନ୍ଦୁ ହୋଇ
ଖସି ପଡୁଥିବା
କାକର ସହ
ବିଚିତ୍ରବର୍ଣ୍ଣା ମୟୂର ସହ
ମୁଁ ଏଠି ଥିଲି କିଛି ଦିନ ।

ଫୁଲରୁ ଝରୁଥିଲା
ଝୁରୁଝୁରୁ ସ୍ୱପ୍ନ
ସମୟ ସ୍ପନ୍ଦିତ ଥିଲା
ମୟୂର ଡାକରେ
ଅବାରିତ ପକ୍ଷୀ କାକଳୀରେ
ଭୁଡୁବୁଡୁ ସକାଳ ସଞ୍ଜ
ମୁଁ ଏଠି ଥିଲି କିଛି ଦିନ ।

ନିର୍ଜନତା ବେଳେ ବେଳେ
ଡାକୁଥିଲା ମୟୂର କଣ୍ଠରେ
ପିଲାଦିନ ନାଁ ଧରି

ଆବେଗରେ ।
ମେଘ ସହ
ଗଛମାନଙ୍କ ସହ
ମୁଁ ଏଠି ଥିଲି କିଛି ଦିନ ।

•

## ପଦ୍ମବନରେ ବିଶ୍ୱାସର ମୋ ଘର

ବିଶ୍ୱାସ ମୁହିଁ ପଦ୍ମବନର । ପ୍ରୀତିର
ପ୍ରତିମା ଅଲିଭା ପ୍ରେମର । ମୁଁ କେଉଁ
ସ୍ୱରର ରାଗ ଆଶାବରୀ । ମୁଁ କେଉଁ
ମୂର୍ଚ୍ଛନା ଆଶାର ଲହରୀ । ମୁଁ ଯେ ଦୂର
ଅତୀତର ଅଲିଭା ସଳିତା, ସ୍ୱପରେ
ଆମ ହୁଏ ସିନା ଦେଖା । ସ୍ୱପ୍ନ ତ
କେବେ ସରେନା ଜୀବନେ । ସ୍ୱପ୍ନ ବି
କେବେ ମରେ ନାହିଁ ମନେ । ମୁଁ ଏକ
ସ୍ୱପ୍ନ ସୁନୀଳ ମନର । ମୁଁ ଭସା ବାଦଲ
ଦୂର ଅତୀତର । ଦୂର ଦିଗନ୍ତ ମୟୂରୀର
ସ୍ୱର । ସୁନାର ଫସଲ ଆଶାୟୀ
ମନର । ଟୋପି ଟୋପି କାକର ବିନ୍ଦୁ ।
ଅନେକ ବିନ୍ଦୁରେ ଗୋଟିଏ ସିନ୍ଧୁ । ମୁଁ
ସେହି ସିନ୍ଧୁ ଧାର । ଅସରନ୍ତି କେତେ
ଅକୁହା ଆବେଗ । ଅସରନ୍ତି ସ୍ନେହ
ପ୍ରୀତିର ସୋହାଗ । ସୁରଭି ସଜଳ
ପାହାନ୍ତି କାକର ଗାର । ପଦ୍ମବନରେ
ବିଶ୍ୱାସର ମୋ ଘର ।

•

# ଆସିଲା ବେଳେ

ଭୁଲିଯାଇଥିବା ସେଇ ଗୀତଟିକୁ
ପୁଣି ମନେ ପକାଇ ଦେଲା ଏଇ ସମୟ
ପ୍ରେମ ମନେ ପକାଇ ଦିଏ ସମୟକୁ
ନା ସମୟ ପ୍ରେମକୁ ।

ମୁଁ ଆସିଲା ବେଳେ
ଷ୍ଟେସନର କୋଳାହଳ ଭିତରେ
ପୃଥିବୀ ଆଖିରେ
ମେଘ ଜମାଟ ବାନ୍ଧିଥିଲା
ଝିଅ ଓ ପୃଥିବୀ ଏକାପରି
ଝିଅ ଆଖିରେ ଲୁହର ଲହଡ଼ି ଭାଙ୍ଗୁଥିଲା ।

ଝିଅ କିଛି ବି ଭୁଲିନି
ତା ପିଲାଦିନର କଣ୍ଢେଇଟିକୁ ବି ନୁହେଁ
ଆଜିକାଲି ମୁଁ ବି କିଛି ଭୁଲିପାରିନି
ପିଲାଦିନ, ସ୍କୁଲଦିନ
ମାମୁଘର ଗାଁ
ସବୁ ସାଇତା ହୋଇ ରହିଛି ସେମିତି ।

ଆସିଲା ବେଳେ ଝିଅ କାନ୍ଦୁଥିଲା
ଝିଅମାନେ କାହିଁକି କାନ୍ଦନ୍ତି ଏତେ
କ'ଣ ସେମାନଙ୍କ ଦୁଃଖ
ଭୁଲିଗଲି ପଚାରିବାକୁ ଝିଅକୁ
ଢେର୍ କଥା ।

•

# ସୁଦୀର୍ଘ ତିରିଶ ବର୍ଷ

ତିରିଶ ବର୍ଷ ତଳେ ମୁଁ ଛାତ୍ର ଥିଲି
ଓଡ଼ିଶାର ସମ୍ଭ୍ରାନ୍ତ କଲେଜରେ ।

କଲେଜ ପାଖରେ ନଈ, ଆମ୍ବବଣ,
ଗଙ୍ଗଶିଉଳି ଝୁରୁଝୁରୁ ବାସ୍ନାର ବଳୟ ।
ସୁଦୀର୍ଘ ତିରିଶ ବର୍ଷ
ଭଙ୍ଗାଗଢ଼ା ସମୟର ଦୀର୍ଘ ଇତିହାସ ।

ଏକାମ୍ର ନଗର
ଇତିହାସେ ଲିପିବଦ୍ଧ ସୁବର୍ଣ୍ଣ ଅକ୍ଷର ।
ରାଜରାଣୀ ମୁକ୍ତେଶ୍ୱର
ମନ୍ଦିରର ମୁଖଶାଳା ପ୍ରେମର ସ୍ୱାକ୍ଷର ।

ସେଦିନ କେବଳ ସ୍ୱପ୍ନରେ ଦେଖିଥିଲି
ମନ୍ଦିରର କାରୁକଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ।
ଦିନେ ନୁହେଁ, ମାସେ ନୁହେଁ
ସୁଦୀର୍ଘ ତିରିଶ ବର୍ଷ ।

ସେଦିନ ମୁଁ ନଈ ସଙ୍ଗେ ମିଶି
ନଈ ହୋଇଯାଇଥିଲି ।
ମେଘ ବୋଇତରେ ବସି ସ୍ୱପ୍ନର
ପାରାବାରେ ଭାସୁଥିଲି ।

ଆଜିକାଲି ସ୍ୱପ୍ନ ଦେଖିବାକୁ
ମନ ହୁଏ ନାହିଁ ।
କମ୍ପ୍ୟୁଟର ସ୍ୱପ୍ନ ସବୁ
ଚୋରାଇ ନେଇଛି ।



## ସୁଗନ୍ଧିତ ବାରିପଦା

ଅନେକ ସୁଗନ୍ଧରେ
ସୁଗନ୍ଧିତ ବାରିପଦା
ଏଇ ମନ୍ତ୍ର-ଗନ୍ଧ ଖୋଜିବାକୁ ଯାଇ
କେତେ ଅଭିଷିକ୍ତ ପୁରୁଷ
ନିଖୋଜ ହୋଇଗଲେ ସେଦିନ ।

ବିଶ୍ୱାସର ପଦ୍ମବନ ଉଜୁଡ଼ିଗଲା ଆପେ ଆପେ
ସାତ ତାଳ ପଙ୍କ ଆଉ ପାଣି ତଳେ
କେଉଁ ହରିଦ୍ରାଭ ସୁଗନ୍ଧ ଟିକକ
ଲୁଚାଇ ରଖିଛୁ ବାରିପଦା ।

ଅସୁରୁଣୀ ବୁଢ଼ୀର ସମ୍ମୋହନ ପରି
ଭୀଷଣ ଦୁର୍ବାର ତୋର ଆକର୍ଷଣ ।
ବେଳେବେଳେ ପାହାନ୍ତାର ପବନରେ
ରାଣୀବାଗ ଅନ୍ଧାର ଭିତରୁ
ଯେଉଁ ଅନ୍ତରଙ୍ଗ ଡାକ ଶୁଭେ
ସେ ଡ଼ାକ ତୋର ନା ଅନ୍ୟ କେଉଁ ଆତ୍ମାର ।

ଏଇ ମନ୍ତ୍ର-ଗନ୍ଧ ଖୋଜିବାକୁ ଯାଇ
କେତେ ନିଷ୍କପଟ ତରୁଣ
ପଥର ପାଲଟିଗଲେ ସେଦିନ ।

ଆଜି କିଛି ନିରାପଦ ନୁହେଁ
ଏପରିକି ବଉଳ ଗଛର ଛାଇ
ସ୍ନେହଶିକ୍ତ କାକର ଟୋପାଏ ।

ଅସହାୟ ଅହିରାଜ ମନତଳେ
ପ୍ରତାରିତ ମୁହୂର୍ତ୍ତ କେବଳ
ଜଳୁଥାଏ ଦିକିଦିକି ହୋଇ ।



# ଭାରତବର୍ଷ (୨)

ମୋତେ ମୁଠାଏ ମାଟି
ଏବଂ ଆକାଶରୁ କିଛି ଦିଅ
ପରମ୍ପରାର ଭାରତବର୍ଷଟିଏ ଦିଅ
ମୁଁ ସାଇବେରିଆରେ ଝରଣା ଝରେଇ ଦେବି ।

ଉଦୟରାଗର ଆଭା
ସୂର୍ଯ୍ୟାସ୍ତର
ଚିତ୍ର ଆଙ୍କି ଦେବି
ମୁଁ କବି, ଭାରତବର୍ଷର କବି
ସାବିତ୍ରୀମାନେ ଯେଉଁଠି ଭୂମିଷ୍ଠ ହୁଅନ୍ତି
ଏଇ ଭୂମିରେ
ମାଟି ହୋଇଯାଏ ସୁଗନ୍ଧିତ
ଉପନିଷଦୀୟ ଭାବନାରେ ।

ରୋହିତାଶ୍ୱ, ଏକଲବ୍ୟ
ଶ୍ରବଣ କୁମାରମାନେ
ଜନ୍ମ ନିଅନ୍ତି ଯେଉଁଠି
ମାଟି ହୋଇଯାଏ ମନ୍ତ୍ରସିଦ୍ଧ ।

ବସୁନ୍ଧରା ହୋଇଯାଏ
ଦୟା କିମ୍ବା ଭାର୍ଗବୀ
ଇତିହାସର ଭୂମି ।

ମୁଁ କବି
ଭାରତବର୍ଷର କବି ।



## ଦେବୀ ଦର୍ଶନ

ଆଜିକାଲି ଦେବୀ ଦର୍ଶନରେ
କେହି ଆସନ୍ତି ନାହିଁ ଆମ ଘରକୁ ।

ଦେବୀ-ବସ୍ତ୍ରରେ ଝଟକୁଥିବା ସମୟ ଆଜି ସ୍ଥିର
ଧୂପରେ, ଝୁଣାରେ
ସମୟ ମହକୁ ନାହିଁ ଆଗପରି ।

ଦେବୀ ଲୁଗାଟିକୁ
ମା କେଉଁଠି ରଖିଦେଇଛି ଯେ
ପାଉନାହିଁ ଖୋଜି ଖୋଜି ।

ସୁଦୂର ପ୍ରବାସରୁ
ସାନଭାଇ ଆସିବନି ଲେଖିଛି ଚ୍ଛୁଟିରେ
ମାଆ ଆଖିରେ ଆଜି ଅଶ୍ରୁ ନା ଆଶୀର୍ବାଦ ।

ଆଜିକାଲି ଦେବୀ ଦର୍ଶନରେ
କେହି ଆସନ୍ତି ନାହିଁ ଆମ ଘରକୁ ।

•

## ବହି ମେଳାରେ

ଏଥର ବହିମେଳାରେ
ପୁଷ୍ପାଞ୍ଜଳି ସଙ୍ଗେ ଦେଖାହେଲା
ବହୁଦିନ ପରେ ।
ଛଳ ଛଳ ଆବେଗରେ
ଝରଣାଟିଏ ଯେମିତି ପୁଷ୍ପାଞ୍ଜଳି ।

ଫୋନ୍ ନମ୍ବର ହଜିଯାଇଛି ପୁଷ୍ପାଞ୍ଜଳିର
ଘରନମ୍ବର ବି ମନେ ନାହିଁ ପୁଷ୍ପାଞ୍ଜଳିର
ବାଲେଶ୍ୱରୀ ଆତ ପରି

ମୃଦୁ ବାସ୍ନାରେ ମହକି ଉଠୁଥିଲା
ପୁଷ୍ପାଞ୍ଜଳିର ମନ ।

ଅସଂଖ୍ୟ ବହିର ପାହାଚ ଭିତରେ
ପୁଷ୍ପାଞ୍ଜଳିର କବିତା ବହି ସ୍ୱର୍ଣ୍ଣମଣି ପରି
ଉଜ୍ଜ୍ୱଳ ଦିଶୁଥିଲା ।
ଗାଁ ପୋଖରୀର ନୀଳକଇଁ
ଯେମିତି ଦେଖାଯାଏ ସୂର୍ଯ୍ୟ କିରଣରେ ।

ସ୍ମୃତିମୟତାରେ ସମୟ ପ୍ରଗାଢ଼ ହୋଇଯାଇଥିଲା
ବହୁଦିନ ପରେ ବହିମେଳାରେ
ପୁଷ୍ପାଞ୍ଜଳି ସଙ୍ଗେ ଦେଖା ହେଲା ।

•

## ତମକୁ ଚିଠି ଲେଖୁ ଲେଖୁ

ତମକୁ ଚିଠି ଲେଖୁ ଲେଖୁ
ଚିଠି ହୋଇଗଲା କବିତା
ଦିନେ ପୁଣି କବିତା ହୋଇଗଲା ସ୍ୱପ୍ନ ଆଉ ପ୍ରେମ ।

ତମକୁ ଚିଠି ଲେଖୁ ଲେଖୁ
ଚିଠି ହୋଇଗଲା ସ୍ମୃତି
ସ୍ମୃତିରେ ଭିଜିଗଲା କବିତା ।

ଦେଖ, ଆଜି କେମିତି
ସେହି ସ୍ମୃତିଭିଜା କବିତା
ମୋ ଛାତିତଳେ
ଜହ୍ନ ରାତି ପରି ମହକୁଛି ।

•

# ମେଘ ସହ

ମେଘ ସହ ଦିନେ
ସଙ୍ଗାତ ବସିଲି
ବରଷାକୁ କଲି ମିତ
ନଈ ସହ ମିଶି
ଗୁଣୁଗୁଣୁ ସ୍ୱରେ
ଗାଇଲି ମୁଁ କେତେ ଗୀତ
ମେଘ ଚାଲିଗଲା
ମେଘର ବାଟରେ
ବରଷା ବି ଗଲା ଫେରି
ନଈ ମିଶିଗଲା
ସାଗର ବୁକୁରେ
ମୁଁ କେବଳ ହୁଏ ଝୁରି ।

ମନ ଅଗଣାରୁ
ଫୁଲଗଛଟି ତ
କେବେଠୁ ଗଲାଣି ମରି
ଛପି ଛପି ଆସି
ମେଘ ଯଦି ମୋର
ଅଗଣାରେ ଯିବ ଝରି
ଫୁଲ ମହକରେ
ମୋ ଟିକି ଅଗଣା
ସରାଗେ ଉଠିବ ପୂରି ।

•

# ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା

ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା
ଦେବୀ ପରି ମହକୁଥିବା ସତ୍ତାଟିଏ ମାଆ ।

ମାଆ ପାଖରେ ଥିଲେ
ସଂସାରଯାକର ଆଶୀର୍ବାଦ
ଅଜାଡ଼ି ହୋଇପଡ଼େ ମଥାରେ ।

ଦେବୀଦର୍ଶନରେ
ସମସ୍ତ ଆସନ୍ତି ଆମ ଘରକୁ
ଘର ହୋଇଯାଏ ମନ୍ଦିର ।

ସୁଦୂର ପ୍ରବାସରୁ
ଫେରି ଆସେ ସାନଭାଇ
ମୋର ଯେତେ ଆତ୍ମୀୟ
ଓ ଅନାତ୍ମୀୟ
ସମସ୍ତେ ପହଞ୍ଚି ଯାଆନ୍ତି
ମାଆକୁ ଦେଖିବା ପାଇଁ ।

ସମସ୍ତଙ୍କୁ ସବୁ ଦେଇ ସାରି
ଆହୁରି କିଛି ଦେବାକୁ
ଉନ୍ମୁଖଥିବା ମାଆ
ଆଜିକାଲି ଛୋଟ ଝିଅ ପରି
ଆଚରଣ କରୁଛି ।

ଅକାରଣେ
ସକାରଣେ
ରୁଷି ବସୁଛି
ଆଉ କେତେବେଳେ
ଦେବୀ ପରି
ମହକୁଛି ତାର ମଠାଲୁଗା ।

ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା
ଦେବୀ ପରି ମହକୁଥିବା
ସଭାଟିଏ ମାଆ ।

•

## ଉଦାସ ମେଘର ଦେଶ

ଉଦାସ ମେଘର ଦେଶ ଗ୍ରୀସ
ପ୍ରାଚୀନ ଦୁର୍ଗର ପରିଖା ଭିତରେ
ସ୍ୱପ୍ନପରି ଝୁରୁଝୁରୁ ରାତିର ପବନ
ଚାରିଆଡେ ଝରିପଡୁଥିବା
ଟୋପା ଟୋପା ମହୁପରି
ଗ୍ରୀକ୍ ସଙ୍ଗୀତର
ମଧୁଝରା ସ୍ୱର ।

ସ୍ୱପ୍ନର ପରିଖା ତଳେ
ସ୍ମୃତିର ମହଲ ।
ଗ୍ରୀକ୍‌ର ସ୍ଥାପତ୍ୟ ତଳେ
ଭାରତୀୟ କବି ଜଣେ
ବିସ୍ମୃତ ବିହ୍ୱଳ ।

କାହିଁ ମୋ ଭାରତ ଭୂମି
କାହିଁ ମୋର ପ୍ରିୟ ପରିଜନ
ସ୍ୱପ୍ନର ପରିଖା ତଳେ
ସ୍ମୃତିର ମହଲ ।

ଦେବକନ୍ୟା ଜଣେ
ପାଖେ ଆସି ଜିଜ୍ଞାସିଲେ
ବିବ୍ରତ କାରଣ ।

ଦେବଭୂମି ଭାରତର ମାଟି
ଦେବତା ଜନ୍ମନ୍ତି ସେଠି
ମଣିଷ ରୂପରେ
ତମେ ହିଁ ନମସ୍ୟ ମୋର
ଭାରତୀୟ କବି
ଉଦାସ ମେଘର ଦେଶ
ଗ୍ରୀସ ଆଜି ଧନ୍ୟ
ତମ ପାଇଁ ।

•

## ଆଉ କାହା ଡାକ

ମୋ ପାଖରେ ନ ପହଞ୍ଚୁ
ଆଉ କାହା ଡାକ ।

ସ୍ୱପ୍ନ ପରି ସୁନ୍ଦର ଶରତ
ବଣୁଆ ଫୁଲର ଗନ୍ଧ
ଚାରିଆଡ଼େ ମୟୂର ଓ
କପୋତୀର ଡାକ ।

କିଛି ବେଳ ସ୍ୱପ୍ନ ସହ
କିଛି ବେଳ ଶରତ ଆକାଶ ସହ
ସୁଖ ଦୁଃଖ ବାଣ୍ଟିବାକୁ
ଆସିଛି ଏଠାକୁ ।

ମୋ ପାଖରେ ନ ପହଞ୍ଚୁ
ଆଉ କାହା ଡାକ
ସ୍ୱପ୍ନପରି ସୁନ୍ଦର ଶରତ ।

•

## ତୁ କାନ୍ଦିଲେ

ତୁ କାନ୍ଦିଲେ ସବୁଜ ଧାନକ୍ଷେତରୁ
ପାଣି ପିଉଥିବା ମାଆ ଚଢ଼େଇଟିର
ନିଃଶବ୍ଦ ମନରୁ ରକ୍ତ ଝରିବ ।

ପୃଥିବୀର ସବୁ ଭଲ ଦିନ
ପାଲଟିଯିବ ଦୁଃଖ ଦିନରେ ।
ମାଆ ଚଢ଼େଇଟି ଗଛରେ ଶୋଇପଡ଼ିବ
ମୁହଁ ଶୁଖାଇ ।

କାନ୍ଦନା, ସୁନାନାକି ଝିଅ କାନ୍ଦନା
ଦେଖ, ତୋ ଘରର ବଉଳ ଗଛରେ
ହଳଦୀବସନ୍ତ ଦୁହେଁ
ମଧୁ ଚନ୍ଦ୍ରିକାରେ ବିଭୋର ।
ଭଲ ପାଇବାର ଝରଣା
ଅନବରତ ଝରି ଚାଲିଛି ପୃଥିବୀରେ ।

ତୁ କାନ୍ଦିଲେ
ସ୍ୱପ୍ନ ସବୁ ମରିଯିବ ମୋ ମନରୁ ।

•

## ମାସିଡୋନିଆ ବିମାନ ବନ୍ଦରେ

ମାସିଡ଼ୋନିଆ ବିମାନ ବନ୍ଦରେ
ସୂର୍ଯ୍ୟାସ୍ତ ରଙ୍ଗର ପକ୍ଷୀଟିଏ
ଓଠରେ ତା' ଲାଇଲାକ୍ ଫୁଲରେଣୁ ଧରି
ଝୁରୁ ଝୁରୁ ଜହ୍ନ ରାତି ପରି
ଅପେକ୍ଷା କରିଛି ମୋତେ
ଏଇ ସୂର୍ଯ୍ୟାସ୍ତରେ ।

ମୋ ଦେଶର ମହକରେ
କଳାର କୀର୍ତ୍ତିରେ
ସ୍ୱାଭିମାନୀ ମୁଁ ଭାରତବର୍ଷ
ମୁଁ ମଲ୍ଲୀ, ମାଳତୀ ଆଉ
ବଉଳର କବି ।

ମୋ ଦେଶର ଆଶାବରୀ
ବିହାଗ ରାଗରୁ କିଛି
ତାକୁ ଦେଇଯିବି ।

•

## ଆଜି ଏଇ ଶେଷ ଶରତରେ

ଆଜି ଏଇ ଶେଷ ଶରତରେ
ସ୍ୱପ୍ନଟିଏ ସ୍ମୃତି ହୋଇ ଆସନ୍ତା କି
ଶବ୍ଦହୀନ ସମୟ ଭିତରେ ।

ସ୍ମୃତି ମୋ ଝିଅର ନାଆଁ
ସ୍ୱପ୍ନ ପରି ଅବିକଳ ଦେଖିବାକୁ ସିଏ
ଜହ୍ନରାତି ଦେହ ତା'ର
ଫାଲଗୁନି ତିଥିର ।

ଫୁଲ ଫୁଟିବା ଶବ୍ଦରେ ଏକା ସିଏ ହସିପାରେ
ନିଃଶବ୍ଦରେ ।
ସାରାଟା ସମୟ
ସରିଗଲା ଦୁଃସ୍ୱପ୍ନ ଭିତରେ
ମୋ ଚାରିପାଖରେ ଆଜି
ବଣ ମୟୂରୀର ଡାକ
କପୋତୀର ଡାକ ।

ଆଜି ଏଇ ଶେଷ ଶରତରେ
ସ୍ୱପ୍ନଟିଏ ସ୍ମୃତି ହୋଇ ଆସନ୍ତା କି
ଶବ୍ଦହୀନ ସମୟ ଭିତରେ ।

•

## ପଟିଆଲା

ଝେଲମ୍ ନଦୀରେ ସେଦିନ ବନ୍ୟା ନ ଥିଲା
ଶାନ୍ତ ଫଲ୍‌ଗୁରେ ଝେଲମ୍ ଅପରୂପା ଲାଗୁଥିଲା ।

ପ୍ରଥମ ଦେଖାରେ ଝେଲମ୍ ମୋର ପ୍ରିୟ
ପରିଚିତ ନଦୀ ପରି ମନେ ହୋଇଥିଲା ।

ସେଦିନ କିଛି ଗଦ୍ୟ କବିତା ଥିଲା ମୋ ପାଖରେ
ପଟିଆଲାରେ କବିତା ନିମନ୍ତ୍ରଣ ।

ସେଦିନର କବିତା ସନ୍ଧ୍ୟା ପରିଣତ
ହୋଇଯାଇଥିଲା ଗଜଲ ସନ୍ଧ୍ୟାରେ ।

ଉର୍ଦ୍ଦୁ କବିତାର ସାଏରୀ ଅନବଦ୍ୟ ଲାଗୁଥିଲା
ମୋତେ ଜଣାଗଲା ସମସ୍ତେ ଜଣେ ଜଣେ
ସାଏରୀ ପାଲଟି ଯାଇଛନ୍ତି ଯେମିତି ।

ମୁଁ ଗଜଲର କବି ନୁହେଁ
କେମିତି କହିଥାଆନ୍ତି ମୋ
ଗଦ୍ୟ କବିତାର କଥା !

•

## ମାଆ ଦେଲା କବି ଆଖିଟିଏ

ମାଆ ମୋତେ କବି ଆଖିଟିଏ ଦେଲା
ବାପା ଦେଲେ ପିଲାଦିନ
ମାମା ଓ ଠାକୁମା ସ୍ୱପ୍ନରେ ଭରିଦେଲେ ସ୍କୁଲବ୍ୟାଗ
ପରୀ କାହାଣୀରେ
ଲୋକକଥାରେ ସୁବାସିତ ହୋଇଗଲା ପିଲାଦିନ
ଖଗେନ୍ଦ୍ର ସାର୍, ମହେନ୍ଦ୍ର ମାଷ୍ଟ୍ରେ
ଶିଖାଇଲେ ଜୀବନର ଉଠାଣି ଗଡ଼ାଣି
ଚଢ଼ିବାର କଠୋର ସାଧନ ।

ମାଆ ମୋତେ କବି ଆଖିଟିଏ ଦେଲା
ବାପା ଦେଲେ ପିଲାଦିନ
ଗାଁ ନଈ, ଗାଁ ବଣବିଲ
ହରିଜେନା ଚୁଣ୍ଡିଆ ବେହେରାର
ଢ଼ୋକଗିଲା ମୁମୂର୍ଷୁ ଜୀବନ
ମୋ ମାମାର ବିଷଣ୍ଣ ଏକୁଟିଆ ପଣ
ବୁଝାଇ ଦେଲା ଯେ
ଏ ଜୀବନ ଯେତେ ଜିଦ୍‌ଖୋର୍
ସେତେ ନିଷ୍କରୁଣ ।

ଆଜି ଏଇ ବିଦେଶରେ
ଅକ୍ସଫୋର୍ଡ଼ କ୍ୟାମ୍ବ୍ରିଜ ମାଟିରେ
ଖଗେନ୍ଦ୍ର ସାର୍‌ଙ୍କ ଅଙ୍କ ପାଇଁ କାନମୋଡ଼ା
ସ୍କୁଲ ବଗିଚାର ଚିନିଚଂପା
ସୁବାସିତ ବେଳ
ସବୁକୁ ଗଣ୍ଠିଲି କରି ଆସିଛି ମୁଁ ବିଦେଶକୁ
ରହି ରହି ମନେପଡ଼େ ମୋର ସେହି
ବୋକା ବୋକା ଶୈଶବର ଦିନ ।

•

# ନୋଲକପିନ୍ଧା ମୁହଁ

ଶୁକ୍ରତାରା ଜ୍ୟୋତିରେ
ଚକ୍ ଚକ୍ କରୁଥିବା
ପରଂପରାକୁ ଆଗୁଳେଇ ଧରିଥିବା
ଚିଜଟିର ନାଆଁ ନୋଲକ କିଏ ଦେଇଥିଲା କେଜାଣି ।

ସ୍ନେହର ସୁନାପାଣିଦିଆ ସୂକ୍ଷ୍ମ ତାରକସିରେ ବନ୍ଧା
ନୋଲକଟି ଥିଲା ମୋ ମାଆର ।

ପୁରୁଣା ବୁନିଆଦିକୁ ବାରମ୍ବାର କାନିରେ
ଗଅଁଠାଉଥିବା ଆଈଠାରୁ ପାଇଥିଲା ନୋଲକଟି
ଉତ୍ତରାଧିକାର ସୂତ୍ରରେ ।
ଜୀବନର ଉଠାଣି ଗଡ଼ାଣିରେ
କେତେ ଦୀର୍ଘଶ୍ୱାସର ଛିଟା
ବାଜିଥିବ ତା ଦେହରେ ।

କେତେ ଆବେଗମୟ ମୁହୂର୍ତ୍ତରେ
ରୋମାଞ୍ଚିତ ହୋଇଥିବ ନୋଲକଟି ।
ମାଆ ମୁହଁର ମାନଚିତ୍ରରେ ଶୋଭାପାଉଥିବା
ଅଷ୍ଟଧାତୁରେ ନିର୍ମିତ ନୋଲକଟି
ଏକ ଆଲୋକିତ ଭୂଖଣ୍ଡ
ଏକ ପାର୍ବଣ ଗାଁ ଯେମିତି ।

ମାଣିଆବନ୍ଧ ଶାଢ଼ିର ଓଢ଼ଣା ଭିତରେ
ନୋଲକପିନ୍ଧା ମୁହଁଟି ଥିଲା
କେଉଁ ରୂପକଥାର ପରୀକାହାଣୀ ପରି ।

ସେହି ଆଲୋକିତ ଭୂଖଣ୍ଡ ଭିତରୁ
କୋଳାହଳମୟ ମଫସଲୀ ସକାଳଟିଏ
ସନ୍ତର୍ପଣରେ ଓହ୍ଲାଇ ଆସୁଥିଲା ।

କେଉଁ ଅଦୃଶ୍ୟ ଦୁଃଖକୁ
ସାମ୍ନା କରୁଥିବା ମାଆ ଆଜି
କୁହୁଡ଼ିଆ ସକାଳର ଦୂରଦିଗ୍‌ବଳୟ ।

ଆଜିକାଲି ତାର ଆଉ
କିଛି ମନେ ରହେ ନାହିଁ ।
ବଦଳି ଯାଉଥିବା ସମୟ ଭିତରେ
ଏକ ନିରୀହ ନୋଳକପିନ୍ଧା ମୁହଁ ।

•

## ଜରାନିବାସରେ

ଶେଷରେ ଜରାନିବାସରେ
ମାଆର ରହିବାର ସ୍ଥିର ହେଲା ।
କ୍ରମାଗତ ଅସୁସ୍ଥତା
'କିଛି ଭଲଲାଗୁନି'ର ଅଭିଯୋଗ ଶୁଣି ଶୁଣି
ବିରକ୍ତ ହୋଇଗଲା ସାନଭାଇ ।
ସମୁଦ୍ରକୂଳିଆ ଏକ ପଦ୍ମପୋଖରୀ ଗାଁରେ ଆମଘର
ଯେଉଁ ଘର ଆଜି ଆଉ କାହା ଘର ।
ମାଆ ଆଜି ଗାଁକୁ ଯିବନି
ଜରାନିବାସକୁ ଯିବ
ଜରାନିବାସ ହେବ ତାର ବସାଘର ।
ସାନଭାଇ ବ୍ୟସ୍ତ ନିଜ ପୁଅପାଇଁ
ଆଗରେ ପରୀକ୍ଷା
କିଏ ବୁଝିବ ମାଆକଥା ।
ମୁଁ କହିଲି
ମୋତେ ଦିଅ ମାଆକୁ
ନିର୍ମାଲ୍ୟପରି ମୁଣ୍ଡରେ ଛୁଆଁଇ ରଖିବି ପାଖରେ ।
ରାତିଦିନ ପ୍ରହରୀ ହୋଇ
ଜଗି ରହିବି ତା କାତରଭରା
ଆଖି ଯୋଡ଼ିକୁ ।

ସବୁଦୁଃଖ ତାର ଢାଙ୍କିଦେବି
ପଣତ ତଳେ ।

ମାଆ ଆଜି ଜରାନିବାସରେ
ସ୍ୱପ୍ନ ଦେଖୁଛି କୋଳପୋଛା
ସାନ ପୁଅକୁ
ଚଗଲାଟା, ସବୁକଥା ଡେରିରେ ବୁଝେ ।
ଭଲହେଲା, ଦହଗଞ୍ଜ ଜୀବନ ଠାରୁ
ଏଇ ଭଲ ଜରାନିବାସରେ ।

•

## ଝିଅ ପଢ଼ାଘର

ଏଇଟା ଝିଅର ପଢ଼ାଘର
ଚଉକି ଟେବୁଲ୍
ଟେବୁଲ୍ ଉପରେ ସୋରିଷ ଫୁଲର
ବିସ୍ତୀର୍ଣ୍ଣ ଉପତ୍ୟକା ପରି
ଫୁଲପକା ଚାଦର ।

ତା ଉପରେ ୱାଡ଼ସୱାର୍ଥ, ରବୀନ୍ଦ୍ରନାଥ
ଶ୍ରୀଅରବିନ୍ଦ ।
ଆଗରେ ଟେବୁଲ୍ ଲ୍ୟାମ୍ପ୍
ଉଦୟ ସୂର୍ଯ୍ୟର ଆଭା
ଆଗପରି ନିର୍ବାକ୍ ।

ତା ପାଖରେ ଝିଅର ପିଲାଦିନ ଫଟୋ
ନାକକାନ୍ଦୁରୀ ମୁହଁର ଚିତ୍ରପଟ
ବହିଆଳରେ
ତିନୋଟି ମାଙ୍କଡ଼ର ଅଭିନବ ଛବି
ପାଟି ବନ୍ଦ, ଆଖି ବନ୍ଦ, କାନ ବନ୍ଦର ଚିତ୍ର ।
ଝିଅ ପଢ଼ାଘର
ସ୍ୱପ୍ନମୟ ସବୁଜ ଭୂଖଣ୍ଡ ପରି ଭାରି ମଧୁର ।

ଏବେ ଭୋର ହୋଇ ଆସିଲାଣି
ପକ୍ଷୀଙ୍କର ନାନାବିଧ ସ୍ୱର ।

ପିଲାଦିନ, ହାର୍‌ମୋନିଅମ୍, ତାନ୍‌ପୁରା
ଚକା ଚକା ଭଉଁରୀର ଖେଳ ।
ଶିଶୁଗୀତ, ବର୍ଷାଋତୁ, ଗାଁ ଚିତ୍ର
ସବୁ ଅପୂର୍ବ ଅନବଦ୍ୟ ।

ଥାକ ଥାକ ବହି
ଥାକ ଥାକ ସ୍ୱପ୍ନ ।
କଣ୍ଢେଇ ଗ୍ରୀଟିଂସ୍ ସ୍କୁଲ ଦିନ
କଲେଜ ଦିନ ସବୁ ଅନୁପମ
ସୁବାସିତ ଛାୟାପଥ ।

ଝିଅ ଆଜି ପ୍ରବାସରେ
ତା' ପଢ଼ାଘର ଆଞ୍ଜୁଳା ଆଞ୍ଜୁଳା
ସ୍ମୃତିର ଫୁଲରେ ସୁସଜ୍ଜିତ ଭାରି ମଧୁର ।

•

## ମାଆ ଦିନେ ଅପାଂକ୍ତେୟ ହୋଇଯାଏ

କାହିଁକି ଏମିତି ହୁଏ
ମାଆ ଦିନେ ଅପାଂକ୍ତେୟ ହୋଇଯାଏ ।

ଉଚ୍ଚ ରକ୍ତଚାପର ଅବସାଦଭରା ଜୀବନ
ଭିତରେ ଥକିପଡ଼େ ମାଆ ।
ଲୋକଦେଖାଣିଆ ସଂପର୍କ
ଦୁର୍ବିସହ ଲାଗିଲେ ବି
ଚାବିଦିଆ କଣ୍ଢେଇ ପରି ହସିବାକୁ ପଡ଼େ
ବେଳେ ବେଳେ ।

ଲୌକିକତାର ଚାପରେ
ସେ ଅତିଷ୍ଠ ହୋଇଗଲାଣି କେବେଠାରୁ ।

କାହିଁ କେତେ ପଛରେ
ଛାଡ଼ିଆସିଥିବା ଗାଁର
ପୋଖରୀ ତୁଠ ମନେପଡ଼େ ।

କିଛି ଦିନ ହେବ
ମାଆର ଦେହ ମନ କିଛି ଭଲ ନାହିଁ ।
ଆଜିକାଲି ଖୋଲାଖୋଲି ଭାବରେ
କିଛି କହିପାରେନି ଝିଅକୁ ।

ସକାଳୁ ସଞ୍ଜଯାଏ ଚର୍କି ପରି
ଘୂରୁଥାଏ ଝିଅ ।
ଝିଅର ଉଦାସୀନତା
ଝିଅର ନିରୁପାୟତା
ମାଆସବୁ ବୁଝିପାରେ ।
ଆକାଶପରି ଝିଅର ମନ
କେତେବେଳେ ଘନଘୋର ମେଘ
ସେ ମନରେ ତ
କେତେବେଳେ ଶରତ ଋତୁର ଜହ୍ନ
ମାଆ ସବୁ ବୁଝିପାରେ ।

ପୁଅମାନଙ୍କ ପାଖରେ ସେ ଅପାଂକ୍ତେୟ
ଝିଅ ସଂସାରରେ ସେ କେବଳ ଅତିଥିଟିଏ
କାହିଁକି ଏମିତି ହୁଏ
ମାଆମାନେ ଅପାଂକ୍ତେୟ ହୋଇଯାଆନ୍ତି ଦିନେ ।

•

## ନିରୀହ ନଈର ଆତ୍ମକଥା

ଏବେ ସବୁଦିନ ରାତିରେ ନିଦ ଭାଙ୍ଗିଲେ ଦେଖେଁ
ଅନ୍ଧାର ଭିତରେ ଅନ୍ଧାର ହୋଇ
ବିଛଣାରେ ବସିରହିଛି ମାଆ ।

ଆଜିକାଲି ତା ଆଖିରୁ
ସବୁ ନିଦ କିଏ ଚୋରେଇ ନେଇ ଯାଇଛି
ଗତବର୍ଷ ତାର ସବୁ ସ୍ଥାବର ଅସ୍ଥାବର
ସଂପତ୍ତିକୁ ବାଣ୍ଟିଦେଇଛି ପୁଅଙ୍କୁ ।

ଆଗରେ ବାପାଙ୍କ ଶ୍ରାଦ୍ଧ
କାହାକୁ କହିବ ଚୂନ ଦେବାପାଇଁ
ତାଙ୍କ ସମାଧିରେ ।
ପିଲାଦିନେ ମାଆ ଲୁଗାକାନିରେ
ମୁହଁ ନ ଢ଼ାଙ୍କିଲେ
ଯାହା ଆଖିକୁ ନିଦ ଆସୁନଥିଲା
ସେଇ କୋଡ଼ପୋଛା ସାନପୁଅ
ଆଜିକାଲି କଥାହୁଏ ନାହିଁ ।
ଆଳୁଭର୍ତ୍ତା, ପତ୍ରପୋଡା ପାଇଁ
କଳି କରୁଥିବା ବଡ଼ପୁଅ
ଯନ୍ତ୍ର ପାଲଟି ଯାଇଛି ।
ଅନ୍ଧାର ଭିତରେ ଅନ୍ଧାର ହୋଇ
ମାଆ ସେମିତି ବସି ରହୁ ।
ତା'ର କାନ୍ଦିଲା ମୁହଁ
ମୋତେ ଆଉ ଦେଖା ନଯାଉ
ମୁଁ ତ ଢ଼େର୍ ବାଟ ଘୁଞ୍ଚ ଆସିଲିଣି ତା ପାଖରୁ
ଏକଥା ମୋର ନୁହେଁ
ଏକ ନିରୀହ ନଈର ଆତ୍ମକଥା ।

•

## ମାଆ ଯେଉଁଠି ବି ଥାଏ

ଲୁହ ଜମିଜମି ପଥର ପାଲଟିଯାଇଛି ମନ
ସମୟ ତ ସରିଆସିଲାଣି
ଆଉ କେତେଦିନ ।

ତାକୁ ଆଜିପଠାଇ ଦେଇଛ
ଯାତନାର ଅନ୍ଧାରି ଗୁହାକୁ
କାନ୍ଦେ ସିଏ ଲୁଚାଇ ଲୁଚାଇ ନିଭୃତରେ ।

ମୁଁ ଦେଖିଛି
ସେ କେମିତି ବସିଥାଏ ଚୁପ୍‌ଚାପ୍
ରୋଷେଇ ଘର ଏକଲା କୋଣରେ
ତମର ବେଳ କାହିଁ
ତା ପାଖରେ ଦଣ୍ଡେ ବସିବାକୁ ।

ସିଏ ଥିଲେ ସଞ୍ଜବେଳେ
ଘରେ ଦୀପ ଜଳେ ।
କୁଅମୂଳ ବାସ୍ନାୟିତ ହୋଇଯାଏ
ଜହ୍ନ ଆଲୁଅରେ ।
ମାଆ ଯେଉଁଠି ବି ଥାଏ
ତାହା ମନ୍ଦିର ପରି ବାସୁଥାଏ ।

•

## କଲୁରୀବେଣ୍ଟ

ତୁ କଣ ଜାଣିନୁ
ତୋତେ ଯିବାକୁ ହେବ
ଆହୁରି ଢ଼େର୍ ଦୂର ।

ଅଧାଜହ୍ନ ଆକାଶରେ ଉଠି ଆସୁଥିବ
ବିଶ୍ୱାସୀ ପ୍ରିୟଜନଟିଏ
ଅପେକ୍ଷା କରିଥିବ
ତୋ ଫେରିବା ବାଟକୁ ।
କେତେ ବେଣ୍ଟ ପୋଖରୀ
କେତେ ଅଗ୍ନାଅଗ୍ନି ବନସ୍ତର ଅନ୍ଧାର
ଆହୁରି ବାକିଅଛି ପାରି ହେବାକୁ ।

ମାଆର ସଞ୍ଚିତ ଆଶିଷ ସବୁ
କାର୍ତ୍ତିକ କାକର ହୋଇ ଝରିପଡୁଥିବ
ତୋ ବାଟରେ ।
ବେଣ୍ଟପୋଖରୀ ତ ଆହୁରି ଢେର୍‌ଦୂର
ଗୋପନରେ ପୋଖରୀର
ସାତ ତାଳ ପାଣି ଭିତରେ
ତୋ ପାଇଁ ଆଶୀର୍ବାଦ ନୁହେଁ
ଅଭିଶାପ ଲୁଚିଥିବ
ତୁ ଜାଣି ନ ଥିବୁ ।
କଲୁରୀବେଣ୍ଟ ପାଖରେ
ପହଞ୍ଚିବାକୁ ହେଲେ
ସବୁ ଦୁର୍ଯୋଗକୁ, ଦୁର୍ଭାବନାକୁ
ତିଳକ କରିବାକୁ ହେବ ମଥାରେ ।
କେତେ ବେଣ୍ଟପୋଖରୀର ଅଭିଶପ୍ତ ଅନ୍ଧାର
ଅଗ୍ନାଅଗ୍ନି ବନସ୍ତର
ଅମୁହାଁ ଦେଉଳ ପାଖର ମାଟି ।
ଦିନକ ପାଇଁ ବି ହସି ନଥିବା
ମଣିଷର କୃପଣ ବ୍ୟବହାର
ସବୁକୁ ଘେନିବାକୁ ହେବ ମନରେ ।
ସାରାଜୀବନ ଖାଲି ଦଉଡ଼ିବା ଛଡ଼ା
ଆଉ କଣ ଥାଏ
କଲୁରୀବେଣ୍ଟ ହିଁ ତୋ ଭବିତବ୍ୟ ।

•

## କବିର ମାଆ

ମାଆ ଆଗରୁ ଜାଣି ନଥାଏ
ସେ ଜଣେ କବିକୁ ଜନ୍ମଦେବ ବୋଲି ।
ମାଆ ତ ଚିରକାଳ ମାଆଟିଏ
ସେ କେମିତି ବୁଝନ୍ତା

କବିର ମାଆହେବା
ସୌଭାଗ୍ୟର କି ଦୁର୍ଭାଗ୍ୟର ।
ମାଆ କେବଳ ଚିହ୍ନାଇପାରେ
ଭଲପାଇବାର ଛଳଛଳ ନଈଟିକୁ ।
ଆବେଗଭର୍ତ୍ତି ଫୁଲଗଛଟିକୁ ।
ପ୍ରେମିକାର ଚାହାଁଣି ଭିତରେ
ମାଆଟିଏ ଛପିଥାଏ ବୋଲି
ଅର୍ଥମୟ ହୋଇଯାଏ ଜୀବନ ।
ମାଆ ଆଗରୁ ଜାଣିନଥାଏ
ସେ ଜଣେ କବିକୁ ଜନ୍ମଦେବ ବୋଲି ।
ସବୁ ମାଆ ଭିତରେ
ଈଶ୍ୱରୀଟିଏ
ସବୁ ପ୍ରେମିକା ଭିତରେ
ନିଷ୍କପଟ ମାଆଟିଏ ଲୁଚିଥାଏ ।
କବିର ରକ୍ତକଣିକାରେ
ମାଆର ଭଲପାଇବା
ଦୂର ଗହୀରର ଅନ୍ଧାର ଭିତରୁ
ମିଞ୍ଜିମିଞ୍ଜି ଲଣ୍ଠନଟିଏ ହୋଇ ଜଳିଉଠେ ।
ଲଣ୍ଠନର କ୍ଷୀଣ ଆଲୁଅ ପାଖରେ
ମାଆ ଦେବୀ ପରି ବସିଥାଏ
ମୋତେ ଅପେକ୍ଷା କରି ।
ଦୂର ଗାଁର ଆଲୁଅ ପାଖକୁ ଫେରିଯିବି
ଘରର ମୁଖଶାଳାରେ ଘଡ଼ିଏ ବସିବି ।

•

## ଗହଗହ ଧାନକ୍ଷେତ ପରି

ଆକାଶ ପରି ଗଭୀର ଭଲ ପାଇବାରେ
ସେ ଆବୋରିଥିଲା ଏଇ ସଂସାରକୁ
ଗହଗହ ଧାନକ୍ଷେତ ପରି
ସେ ମହକି ଯାଉଥିଲା ତା ଭିତରେ ଭିତରେ ।

ଭଲ ପାଇବାର ଗଙ୍ଗୋଦକ ଛିଞ୍ଚି ଦେଇ
ସବୁ ଭୁଲ୍‌କୁ ସେ ଠିକ୍ କରି ଦେଉଥିଲା
ଖରା ଖାଇ
ବର୍ଷା ଖାଇ
ଗଛଟି ଯେମିତି
ଶାଖାୟିତ ହୋଇଯାଏ
ପକ୍ଷୀ କାକଳୀରେ
ମାତୃତ୍ୱ ସ୍ଫୁରିତ ହୁଏ ପ୍ରତିଟି ପତ୍ରରେ ।

ଠିକ୍ ସେଇ ଗଛପରି
ଅଫୁରନ୍ତ, ଉଚ୍ଛାଟିତ ଆବେଗରେ
ସେ କିପରି ଆପଣେଇ ପାରୁଥିଲା ସମସ୍ତଙ୍କୁ
କୋମଳ ମଧୁର ତାର ଭଲ ପାଇବାରେ ।

ଅମୃତରେ ଭରପୂର ଧାନକେଣ୍ଡା ପରି
ସେ ତ ସବୁବେଳେ ସ୍ନେହ ଛଳଛଳ
ଆଜି ଏଇ ପତ୍ରଝଡ଼ା ମୁହୂର୍ତ୍ତରେ
ବିସର୍ଜନ ହୋଇସାରିଥିବା ଦେବୀମୂର୍ତ୍ତି ପରି
ଅତି ବେଶୀ ନୀରବ ନିଶ୍ଚଳ ।

ମୋ ସ୍ମୃତିର ସ୍ଥାପତ୍ୟ ଭିତରେ
ଭିଜେଇ ଥରେଇଦିଏ ତାର ଏଇ ବାର୍ଦ୍ଧକ୍ୟର ଛାଇ
ଗହଗହ ଧାନକ୍ଷେତ ପରି
ଯିଏ ଦିନେ ଏତେ ବେଶୀ ଭରପୂର ଥିଲା
ସେଇ ଦେବୀ ପରି ମାଆ ଆଜି ବୁଢ଼ୀ ହୋଇଯାଇଛି ।

•

## ମାଆ, ମୁଁ ଏବଂ ସମୟ

ମୁଁ ଏଠାରେ ଲୋତକ ସାଉଁଟେ ବସି
ଜିଆ ଭଳି ଆପଣାକୁ ଓଟାରି ଓଟାରି
ଫାଶିଦିଆ ବରଗଛ ଯଖପୋଖରୀରେ
ନିଇତି ଭେଟଣା ହୁଏ ପ୍ରେତ ହୋଇ

ଘୂରୁଥିବା ଜଣେ କେହି ପ୍ରେତ ସହ
ଦିନ ଦ୍ୱିପ୍ରହରେ ।

ମୋ ମାଆ ପଣତ ଛାଇ ତୁନିତାନି
ମାଟିଘର ତଳେ
ମୁଁ ଖୁବ୍ ନିଦକ୍ ଥିଲି
ଅଲିଅଳ ସୁକୁମାର ମନ ମୋର
ଖରାତରା ଜାଣି ବି ନଥିଲା
ସମୟର ସପ୍ତଫେଣୀ
ମୋ ଜୀବନ କଣା କରି
ସ୍ନେହ ପ୍ରେମ ସବୁ ନେଲା ପରେ
ମୋ ଜୀବନ ପାତ୍ର ଆଜି
ନିଃଶେଷ ହୋଇଲା ।

ଦିନ ବାରଟାରେ ଏଠି ମୁଁ ଚମକେ
ଭେଟଣାରେ ମୋ ଦେହର ସବୁ ରକ୍ତ
ପାଣି ହୋଇ ବୋହିଯାଏ
ମୋର କାମନା ସବୁ ନିରୋଟିକ୍
ରୋଗୀ ପରି ନିଜ ସହ
ସଙ୍ଗାତ ବସାଏ ।

ମୋ ମାଆର ଡେଉଁରିଆ ଫିଙ୍ଗିଦେଲି
ବୋଲି ଅବା ମୋ ମନରେ ଅନ୍ଧକାର ଚେଇଁଉଠେ
ସମୟ ଓ ଅସମୟ, ଅନ୍ଧକାର ଆଲୁଅ ନ ମାନି
ସେଥିପାଇଁ ମୁଁ ଏଠାରେ ଲୋତକ ସାଉଁଟେ ବସି
ଜିଆ ଭଳି ଆପଣାକୁ ଓଟାରି ଓଟାରି ।

•

## ଶୈଶବ ଝୁଲୁଛି କାନ୍ଥରେ

ଜରରେ ଖଇଫୁଟୁଥିବା ବେଳେ
ରାତିରାତି ନ ଶୋଇ ନ ଖାଇ
ଜଗି ବସିଛୁ ପାଖରେ ।

ଝଡ଼ି ବର୍ଷାରେ ଶାବକମାନେ
ଭିଜିବେନି ବୋଲି
ନିଜେ ଗୋଟାପଣେ ଓଦା ହୋଇ
ପଣତ ଢ଼ାଙ୍କି ଦେଇଛୁ ମୁଣ୍ଡରେ ।
ସଂସାରର ବୋଝ ମୁଣ୍ଡାଇ ଚାଲିଲା ବେଳେ
ଲହୁଲୁହାଣ ହୋଇଛୁ କେତେଥର
କାହାରିକୁ କହିନୁ
ଥକିଯାଇଛୁ ବୋଲି ।

ଉପରକୁ ଯେତେ ସତେଜ ଦିଶିଲେ ବି
ଭିତରେ କେମିତି ଶୁଖି ଶୁଖି ଆସୁଛି
ପ୍ରବାହମାନ ସ୍ରୋତ ।
ଶାବକଟିକୁ ଆଧାର ଦେଇ
ମାଆ ପକ୍ଷୀଟି ପ୍ରତିଦିନ ଉଡ଼ିଯାଉଥାଏ
ଢେର୍ ଦୂରକୁ ।
କେବେ କିଛି ପ୍ରତ୍ୟାଶା ନ ଥାଏ ତାର ।
ତୁ ଯେତେ ଯୁଆଡ଼େ ଗଲେ ବି
ଘରକୁ ଫେରିଆସୁ ।
ଯେଉଁଠି ତୋ ପିଲାଙ୍କର
ଶୈଶବ ଝୁଲୁଛି କାନ୍ଥରେ
ଫଟୋ ହୋଇ ।

•

## ଯେତେଯେତେ ଅଘଟଣ

ପ୍ରତିଦିନ ସକାଳ ହେଲେ
କଳା ବିଲେଇ କେଉଁଠି ଥାଏ କେଜାଣି
ମୋ ଯିବାଆସିବା ରାସ୍ତାରେ
ଆସି ପହଞ୍ଚିଯାଏ ଆପେ ଆପେ ।

ସବୁ ଅଶୁଭ ଘଟଣା
ଘଟିଯାଏ ଛାଏଁ ଛାଏଁ

ଅନେକଦିନ ହେଲାଣି
ନିଦ ଔଷଧ ସତ୍ତ୍ୱେ
ମାଆ ଅନିଦ୍ରାରେ କଷ୍ଟ ପାଉଛି
ପ୍ରତି ରାତିରେ ।
ତା ମନ ଭଲ ନାହିଁ, ଜାଣେ
କିଏ ଖୋଜିଆଣି ଦେଇପାରିବ
ମନ ଭଲହେବାର
ବିଶଲ୍ୟକରଣୀ ।
ଆଜିକାଲି କଳା ବିଲେଇମାନେ ଆସି
ମୋ ରାସ୍ତା ଓଗାଳନ୍ତି
ମୁଁ ଗୀତଗାଇବା ଭୁଲିଗଲିଣି ଅନେକ ଦିନରୁ
ନିଦ ଔଷଧ ସତ୍ତ୍ୱେ
ନିଦ ହୁଏନି ରାତିରେ
ଯେତେ ଯେତେ ଅଘଟଣ
ସବୁ ଘଟୁଥାଏ
ଏକାବେଳେ ।

•

## ବାପଘର (୧)

ସବୁ ସଜାଡ଼ି ଦେଲା ଝିଅ
ବଗିଚାକୁ ସଜାଇଦେଲା
ନୂଆ ନୂଆ ଫୁଲଗଛରେ
ଅସଜଡ଼ା ପଡ଼ିଥିବା ବହିଥାକରୁ
ଧୂଳି ଝାଡ଼ିଦେଲା
ନିଜ ପଣତରେ ।
ଫୁଲପକା କାର୍‌ପେଟରେ ଲେଖିଲା
ଜୀବନର ଗୀତ ।
ବହୁଦିନରୁ ଫୁଟିବ ଫୁଟିବ ହେଉଥିବା
କଞ୍ଚନ ଫୁଲଟି ସେଇଦିନ ହିଁ ଫୁଟିଲା ।

ରୋଷେଇ ଘର ତରକାରିର ବାସ୍ନା
ଘରର ପ୍ରତିକୋଣ ଅନୁକୋଣକୁ
ମହକାଇ ଦେଲା ।

କେତେ ନା କେତେ ଆଚାର
ତିଆରି କଲି ଝିଅ ପାଇଁ ।
ଛୋଟ ମାଛର ପତ୍ରପୋଡ଼ା
ବଡ଼ିର ଶାଗ ଖରଡ଼ା ସବୁ ଖାଇଲା
ଖୁସି ହେଲା ।
ପିଲାଦିନ ପରି
ବଡ଼ ସୁଆଦିଆ ହୋଇଛି କହିଲା ।

ଏକୁଟିଆ ଖରାବେଳେ ବସି
ଆଲବମ୍‌ରୁ ପିଲାଦିନ ଫଟୋ ଦେଖିଲା ।
ସ୍କୁଲ ସାଙ୍ଗ ରଜନୀତ, ନରିନ୍ଦର, ସତ୍ୟକାମ୍
ସମସ୍ତଙ୍କୁ ଝୁରିହେଲା
'ସ୍କୁଲଦିନ ହଜିନାହିଁ'
ଏଇ କଥା ବାରମ୍ବାର ଭାବୁଥିଲା ।

କେଜାଣି କେଉଁ ବାଟରେ ସମୟ ଗଡ଼ିଗଲା
ଏଥର ଝିଅ ଫେରିଯିବ ତା ଘରକୁ
ଫଗୁଣ ଗୋଧୂଳିର ଝୁରୁଝୁରୁ ସ୍ୱପ୍ନ ହୋଇ
ବହୁ ବର୍ଷ ପରେ ଆସିଥିଲା
ଫେରିଗଲା ।

ଝିଅମାନେ ପରଘରୀ ହୋଇଗଲେ
ବେଶୀ ବେଶୀ ମନେ ପଡ଼େ
ପିଲାଦିନ ବାପଘର ଗାଁ ।
ସବୁ ଝିଅଙ୍କ ବାପଘର
ଗୋପନ ଦୁଃଖକୁ ଛାତିତଳ ସିନ୍ଦୁକରେ ରଖି
ଝୁରିହେବା ବେଳ ।

•

## ଭଙ୍ଗାସିଡ଼ି ବାଟ ଦେଇ

ଭାବିଛି ଏଥର କହିବି
ଖୋଲି ଦେ ସର୍ବାଙ୍ଗରୁ
ଅହଙ୍କାରର ସବୁ ଅଳଙ୍କାର ।
ହାତମୁଠାରୁ ଖୋଲି ଦେ ସବୁ ସ୍ୱପ୍ନ
ତୂଣୀର ଭିତରେ ରଖିଦେ
ସବୁ ଅସ୍ତ୍ରଶସ୍ତ୍ର ।
ଆଉ କଣ ଅଛି ଯେ
ଧରି ରଖି ପାରିବୁ ଶେଷ ଯାଏ ।
କେମିତି ସବୁଜ ରଙ୍ଗର ରାସ୍ତା ସବୁ
ବଦଳି ଯାଉଛି ଧୀରେ ଧୀରେ ।
ପ୍ରତିଶ୍ରୁତିର ଫରୁଆ ଭିତରେ
ବନ୍ଦଥିବା ପ୍ରେମ
ଅଣନିଃଶ୍ୱାସୀ ହୋଇଯାଉଛି କ୍ରମଶଃ
ଗୋଡ଼ିବାଣ ଆଉ ଫୁଟୁନି
ଆଗପରି ନିଷ୍କପଟ ଭାବରେ ।
ଚାରିଆଡ଼େ କଣ୍ଟାସିଜୁର ବଣ
ତୋ ସାମ୍ନାର ସିଡ଼ିଟିକୁ
କିଏ ଲୁଚେଇ ଦେଇଛି ହୁଏତ
ଭଙ୍ଗା ସିଡ଼ି ବାଟ ଦେଇ
ଉପରକୁ ଯିବାକୁ ହେବ ତୋତେ ।

•

## ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା

ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା
ଦେବୀ ପରି ମହକୁଥିବା ସରାଟିଏ ମାଆ
ମାଆ ପାଖରେ ଥିଲେ
ସଂସାରଯାକର ଆଶୀର୍ବାଦ
ଅଜାଡ଼ି ହୋଇପଡ଼େ ମଥାରେ ।

ଦେବୀଦର୍ଶନରେ
ସମସ୍ତେ ଆସନ୍ତି ଆମ ଘରକୁ
ଘର ହୋଇଯାଏ ମନ୍ଦିର ।

ସୁଦୂର ପ୍ରବାସରୁ
ଫେରିଆସେ ସାନଭାଇ
ମୋର ଯେତେ ଆତ୍ମୀୟ
ଓ ଅନାତ୍ମୀୟ
ସମସ୍ତେ ପହଂଚି ଯାଆନ୍ତି
ମାଆକୁ ଦେଖିବା ପାଇଁ ।

ସମସ୍ତଙ୍କୁ ସବୁ ଦେଇ ସାରି
ଆହୁରି କିଛି ଦେବାକୁ
ଉନ୍ମୁଖଥିବା ମାଆ
ଆଜିକାଲି ଛୋଟ ଝିଅ ପରି
ଆଚରଣ କରୁଛି ।

ଅକାରଣେ
ସକାରଣେ
ରୁଷି ବସୁଛି
ଆଉ କେତେବେଳେ
ଦେବୀ ପରି
ମହକୁଛି ତାର ମଠାଲୁଗା ।

ଈଶ୍ୱରୀ ଈଶ୍ୱରୀ ମନେ ହେଉଥିବା
ଦେବୀ ପରି ମହକୁଥିବା
ସରାଟିଏ ମାଆ ।

•

## ଭୁଲିଗଲି ପଚାରିବାକୁ

ଭୁଲିଗଲି ପଚାରିବାକୁ ଢ଼େର୍ କଥା
ଝିଅକୁ ।
ଏତେ ଦୂରରୁ
ଜୀବନ ଜଂଜାଳରୁ ମୁକ୍ତ ହୋଇ

ଯାଇଥିଲି ତା' ପାଖକୁ
ବହୁଦିନ ପରେ ।
ଯିବାଠାରୁ ଫେରିବା ପର୍ଯ୍ୟନ୍ତ
ବ୍ୟସ୍ତଥିଲି ବିଭିନ୍ନ କଥାରେ
ଝିଅ ଭାରି ଖୁସି ଥିଲା
ଖୁସିରେ ପାଦ ଲାଗୁନଥିଲା ମାଟିରେ
ଟିକିନିଖି ସବୁକଥା ବୁଝୁଥିଲା ମା' ପରି
ବେଳେ ବେଳେ ଥଟ୍ଟା କରୁଥିଲା ବନ୍ଧୁ ପରି ।

ଆଜି ଫେରିବା ବେଳେ
ଲୁହରେ ଦୁଇ ଆଖି
ଭରି ଯାଇଥିଲା
ଝିଅ କାନ୍ଦୁଥିଲା
ସେଦିନ ବି କାନ୍ଦୁଥିଲା
ଯେଉଁଦିନ ତା' ପିଲାଦିନ କଣ୍ଢେଇକୁ ଛାଡ଼ି
ବିଦା ହେଲା ।

ମୋ ଛାତି ଫାଟି ଯାଇଥିଲା ସେଦିନ
ଲୁହ ନୁହେଁ
ସବୁ ଅସହାୟତା ଆଖି ଦେଇ
ବାହାରି ଆସିବାକୁ ବାଟ ଖୋଜୁଥିଲା ।

ଝିଅମାନେ କାହିଁକି କାନ୍ଦନ୍ତି ଏତେ ?
ଭୁଲି ଗଲି ପଚାରିବାକୁ ଝିଅକୁ
ଢ଼େର୍ କଥା ।

•

## ପୁରାଣର କେଉଁ ଦେବୀ ପରି

ପୁରାଣର କେଉଁ ଦେବୀ ପରି
ତମେ ଦିଶୁଥିଲ ।
ଦେବୀମାନେ ଯେପରି ହସନ୍ତି
ତମେ ବି ସେମିତି ହସୁଥିଲ ।

ସରଳ ଅଥଚ
ରହସ୍ୟମୟ ତମ ହସ ।

ତମେ ଘରେ ଥିଲେ
ଅପୂର୍ବ ଭଲ ଲାଗିବାରେ
ଘର ମହକେ ।
ଅରଣ୍ୟକୁ ଯଦି ଯାଉଥିଲ
ଅରଣ୍ୟ ବି ଘର ପରି ବାସୁଥିଲା ।

ପୁରାଣର କେଉଁ ଦେବୀ ପରି
ତମେ ଦିଶୁଥିଲ ।
ଦେବୀମାନେ ପ୍ରତିବାଦ କରନ୍ତିନି
ତମ ପରି ସବୁ ସହୁଥାନ୍ତି ନୀରବରେ ।
ସ୍ୱାମୀଙ୍କର ଅନାଗ୍ରହ
ସନ୍ତାନଙ୍କ ଅସହିଷ୍ଣୁଭାବ
ଶେଷଯାଏ ସବୁ ସହୁଥିଲ ।

ରତ୍ନଗର୍ଭା ଦେବୀ
ତମେ ଘରେ ଥାଅ ବୋଲି
ଫେରିବାକୁ ପଡ଼େ ଘରକୁ ।
କୂଅମୂଳର ଶିଉଳି ଉପରେ
ଗୋଡ଼ ଖସିଲେ ବି
ତମ ଶ୍ୟାମଳ ଭଲପାଇବା ଥିଲା ଦୁର୍ବାର ।

ଘରର ପ୍ରତି ଠଣାରେ
ସତର୍କ ଦୀପ ହୋଇ ଜଳୁଥିଲ
ଗହଳିଆ ସଂସାରର ସଂପର୍କ ଭିତରେ
କେହି ନୁହଁନ୍ତି କାହାର
ବୁଝି ସାରିଥିଲ ।
ଗଛର ପତ୍ର ବି ନୁହେଁ
ଫୁଲ ନୁହେଁ
ଫଳ ମଧ୍ୟ ନୁହେଁ
ସବୁବେଳେ

ପୁରାଣକୁ ଗଣ୍ଠିଧନ କରିଥିଲ
ଶେଷରେ
ପୁରାଣର କେଉଁ ଦେବୀ ପରି
ହଠାତ୍ ଦିନେ ଲିଭିଗଲ ।

•

## ମାଆର ଭାଗ୍ୟ

ମାଆ ଆଖି ଲୁହରେ
ତ୍ରିବେଣୀ, ମଥୁରା, ବୃନ୍ଦାବନ
ସବୁ ଏକାକାର ହୋଇଗଲା ।

ଏବେ ତାକୁ ଅଶୀବର୍ଷ
କେହି କେବେ ପଚାରି ନାହାନ୍ତି
ତାର ଭଲ ଲାଗିବା ନଲାଗିବା କଥା ।

ତା ଛାତିତଳେ ଅସୁମାରି ଦୁଃଖ
ଆଖିରେ ପରଳ
କିଛି ଦେଖା ଯାଉନାହିଁ ଆଜିକାଲି ।

ଆଗରେ ଗଙ୍ଗାର ପବିତ୍ରଧାରା
ହିମାଦ୍ରି ତନୟା
ଦୀପାନ୍ୱିତା ସନ୍ଧ୍ୟାର ସମ୍ଭାର ।

ତୀର୍ଥ ପାଇଁ ନୁହେଁ
ଜରାନିବାସରେ ମାଆକୁ ରଖିବା ପାଇଁ
ପୁଅବୋହୂମାନେ ଅଡ଼ି ବସିଥିଲେ ସେଦିନ ।

ସଂସାରର ସବୁ ସମସ୍ୟା ଭିତରେ
ମାଆର ସମସ୍ୟା କିଛି କମ୍ ନୁହେଁ ବୋଲି
ଯୁକ୍ତି କରୁଥିଲା ପୁଅ ।

ମାଆ ଆଉ ଫେରିବନି କହୁଛି
ପୁଅ ସଂସାରକୁ
ଦୁଶ୍ଚିନ୍ତାର ଦୁନିଆକୁ ।

ସେଦିନ ସେ ସମସ୍ତଙ୍କୁ ସବୁ ଦେଇଦେଲା
ଆଉ କାହିଁକି ଫେରିବ ଦୁର୍ଭାବନା ଭିତରକୁ
ଗୋଟିଏ ମାଆର ଭାଗ୍ୟ ତ
ଯୋଡ଼ା ହୋଇଥାଏ
ଗଙ୍ଗା ସହ, ମଥୁରା ସହ
ବୃନ୍ଦାବନ ସହ ।

•

## ମାଆ ବିଷୟରେ ରଚନା

ଆଜି ବହୁବର୍ଷ ପରେ
ପୁଅର ବହିଥାକ ସଜାଡୁ ସଜାଡୁ
ଆବିଷ୍କାର କଲି
ଦ୍ୱିତୀୟ ଶ୍ରେଣୀରେ ଲେଖିଥିବା
ମାଆ ବିଷୟରେ
ଏକ ରଚନା ।

କୁନି ହାତରେ ଲେଖିଥିବା
ଅଙ୍କାବଙ୍କା ଅକ୍ଷରରେ
ମାଆର ଚିତ୍ରଣ କେତେ ଚମତ୍କାର ଥିଲା ।

ସକାଳୁ ସଞ୍ଜଯାଏ
ମାଆ ଘୂରୁଥାଏ ନଟୁପରି
ବିଶ୍ରାମ ନ ନେଇ
ମାଆର ଖଣ୍ଡେହେଲେ ଭଲ ଶାଢ଼ି ନାହିଁ
ସ୍କୁଲଦରମା, ଟ୍ୟୁସନ ଟଙ୍କା
ସାନ ଭଉଣୀର ବହିଖାତା କିଣା
ଜେଜେମା'ଙ୍କ ମେଡ଼ିସିନ ଖର୍ଚ୍ଚରେ
କେମିତି କେଜାଣି ମାଆ ତଥାପି ବି ହସୁଥାଏ ।

ଘରର ସବୁକାମ ମାଆ କରେ
ଆମେ ଦୁହେଁ ଭାଇଭଉଣୀ

ବେଳେବେଳେ ମାଆକୁ ସାହାଯ୍ୟ କରୁ
ଆମ ମାଆ ଭାରି ଭଲ
ମୁମୁନ୍‌ର ମାଆ ପରି ନୁହେଁ ।

ବଡ଼ହେଲେ ମାଆକୁ ମୁଁ
ଭଲ ଶାଢ଼ି ଆଣି ଦେବି ।
କେତେ ଦେଶବିଦେଶ ମୁଁ
ବୁଲାଇବି ।

ମାଆ ସେତେବେଳେ
ବୁଢ଼ୀହୋଇ ଯାଇଥିବ
ଆଖିକୁ ତାହାର ଦିଶୁ ବି ନଥିବ ।
ଆମ ମାଆ ଭାରି ଭଲ
ମୁମୁନ୍‌ର ମାଆପରି ନୁହେଁ ।

•

## ଭଲ ଦିନର ହାତ ଧରି

ସଂପର୍କ ଏମିତି ଭାଙ୍ଗିଯାଏ ଦିନେ
ଯେମିତି ପୁରୁଣା ବୁନିଆଦିର ଚଉପାଢ଼ି ଉପରୁ
ଖସିପଡୁଥାଏ ଚୂନ ସୁରୁକି ।
ଘରକରଣାକୁ ସମ୍ଭଳ କରି ବଞ୍ଚିଥିବା ମଣିଷଟି
ପୁରୁଣା ମସିହା ଛିଣ୍ଡାକନ୍ଥା ପରି
ଅଦରକାରୀ ହୋଇଯାଇଛି ଆଜି ।

ଆଖି ସାମ୍ନାରେ ତାର
ସଂପର୍କ ସବୁ
ଧୀରେ ଧୀରେ ବଦଳି ଯାଉଛି ।
ସଂପର୍କ ସବୁକୁ ଯୋଡ଼ିବା ଏତେ ସହଜ ନୁହେଁ
ଭଙ୍ଗାକାନ୍ଥକୁ ଚିତ୍ରିତ କରି

ସଂପର୍କର ଝୋଟି କେବଳ ଜଣେ ଆଙ୍କିପାରେ
ସେ ମୋ ମାଆ ।
ମାଆ କେବଳ ଭଲ ଦିନର ହାତଧରି ଘରକୁ
ଡାକିଆଣିପାରେ ।

•

## ସମୟର କାଠ ସିନ୍ଦୁକରେ

ମୁଁ ଖୁବ୍ ସାନଥିଲି ସେତେବେଳେ
ନିଚ୍ଛିଦ୍ର ଅନ୍ଧାର ଭିତରେ
ମାଆ ତାର ଅଞ୍ଚଳକୁ
ଘୁମନ୍ତ ଦେହରେ ମୋର ଢ଼ାଙ୍କିଦେଇ
ଗୁଣୁଗୁଣୁ ହୋଇ ଗାଉଥିଲା
'ଲତାଗିରି ବନଗିରି
ମୋ କାନ୍ତ ଗଲେ ମୃଗ ମାରି'
ତାର ସେହି କରୁଣ ଗୀତର ଲହରରେ
ନିଦ ଭାଙ୍ଗି ଯାଉଥିଲା
କୁନି କୁନି ଆଖିରେ
ଅନ୍ଧାରକୁ ଅନାଇ ରହୁଥିଲି ।

ବାପା ଥିଲେ ପ୍ରବାସରେ
କବିତା ଜଗତରେ ।
ମାଆ ତାର ଛୁଆଦିନ କାଠ ସିନ୍ଦୁକରେ
ବନ୍ଦକରି ରଖିଥିବା
ଗୀତଟିକୁ ଅନ୍ଧାର ଭିତରେ କାହିଁକି ଗାଉଥିଲା
ଆଜିଯାଏଁ ବୁଝିପାରିନାହିଁ
କାନ୍ଦି କାନ୍ଦି ଗାଉଥିଲା
ନା ଗାଉ ଗାଉ କାନ୍ଦୁଥିଲା ।

ହେତୁ ହେବାପରେ ଜାଣିଲି
ମାଆ ହେବା ମାନେ

ନିଭୃତ ଦୁଃଖକୁ
ଛାତିର ସିନ୍ଦୁକ ଭିତରେ
ସାଇତି ଶିଖିବା ।
ଯଶୋଦା ହେବା, ଦେବକୀ ହେବା
କିମ୍ବା ଅହଲ୍ୟା ହେବା
ସବୁ ଏକାପ୍ରକାର ଦୁଃଖକଥା ।
ଯଶୋଦା, ଦେବକୀମାନେ
ଜଣେ ଜଣେ ପ୍ରତିଭୂ ମୋ ମାଆର ।
ସମୟ ସହିତ ସଂପର୍କକୁ
ଗଅଁଠଉ ଥିବା
ମାଛ କାଟୁ କାଟୁ ହାତ କଟିଗଲେ
କିଛି ହୋଇନାହିଁ କହି
ଟାଳି ଦେଉଥିବା
ଥରୁଟିଏ ହେଲେ ବି ଭାଗ୍ୟକୁ
ସମ୍ମୁ ନ ଥିବା ମଣିଷଟିଏ
ମୋରି ମାଆ ।

ସମୟର କାଠ ସିନ୍ଦୁକରେ
ଆଜି ବି ସାଇତି ରଖିଛି
ତାର ସେଇ ପ୍ରିୟ ଗୀତ
''ବନଗିରି ଲତାଗିରି
ମୋ କାନ୍ତ ଗଲେ ମୃଗ ମାରି'' ।

•

## ଭୋର ସ୍ୱପ୍ନ

ଭୋର ସ୍ୱପ୍ନ କ'ଣ ସତ ?
ଆହା ସତ ନ ହେଉ ସେ ସ୍ୱପ୍ନ
ସତ ନ ହେଉ ସେ ସ୍ୱପ୍ନ ।

ଶାବକ ଦୁଇଟି ଶୋଇଥା'ନ୍ତୁ ନିଦରେ
ଉଠିଲେ, ମେଘସହ, ପବନସହ
ଖେଳିବାକୁ ଯିବେ ।

ଚାରିଆଡ଼େ ଧର୍ମଘଟ
ବିମାନଘାଟିରେ ବୋମାର ଆତଙ୍କ
ଫାଲ୍‌ଗୁନି ତିଥିର ଝିଅ
ବସିଥିବ ଏକା ଏକା
ପୃଥିବୀକୁ ମୁହଁକରି ।

ପୃଥିବୀର ବଡ଼ ବେଶୀ କଷ୍ଟ ଆଜି
ଝିଅ ଓ ପୃଥିବୀ ଦୁହେଁ ଏକାପରି ।
ଦୁଃଖରେ ଛାତି ଫାଟିଗଲେ ବି
ପାଣି ବିନ୍ଦୁଏ ବାହାରେନି ଆଖିରୁ ।

ଝିଅ ଆଜି ଏକା ଏକା ବସିଥିବ ଭାଗ୍ୟସହ
ଝରକା ନଥିବା ଘରେ ।
ଭୋର ସ୍ୱପ୍ନ କ'ଣ ସତ ?
ଆହା ସତ ନହେଉ ସେ ସ୍ୱପ୍ନ ।

•

## ମାଆ ଭିତରେ ଈଶ୍ୱରୀ

ଘରର ଏରୁଣ୍ଡିବନ୍ଧରେ ପାଦ ଦେଲେ
ମାଆର ଭଲପାଇବାର
ଜରିବସା ଅଂଚଳ
ପ୍ରଥମେ ପୋଛିଦିଏ
ମୋର ସବୁ ବିଷାଦର
ସ୍ୱେଦବିନ୍ଦୁକୁ ।
କିଆଖଇର ମିଶା ସପରକଚୁମଖା
ଖିଲିପାନର ବାସ୍ନା
ମହକିଯାଉଥାଏ ଦାନ୍ତରୁ ବାହାର ।

ରଙ୍ଗିନ ଟି.ଭି. କିମ୍ବା
ଭି.ସି.ଆର. ଘରେ ମୋ' ନଥାଏ,
ଛାତ ଉପର କଅଁଳ ଖରାରେ
ବଢ଼ି ପାରୁଥାଏ
ରୋଷେଇ ଘର ଈଶାନ କୋଣରେ
ଥକ୍କାହୋଇ ବସିପଡ଼ିଥାଏ ।
କେତକୀଖଇର ମିଶା ପାନଖିଆ ପାଟିରେ
ମାଆ ଈଶ୍ୱରୀ ପରି ବାସୁଥାଏ ।

ମାଆ କ'ଣ ଦେବୀ ?
ମାଆ କ'ଣ ଈଶ୍ୱରୀ !
ମାଆ ବେଳେବେଳେ
ହସେ, କାନ୍ଦେ, କଷ୍ଟ ପାଏ
କଷ୍ଟ ପାଇ ପାଇ ପଥର ପାଲଟିଯାଏ
ଠିକ୍ ଈଶ୍ୱରୀମାନଙ୍କ ପରି ।

ଦେବୀମାନେ ଯାତନା ପାଇଲେ
ବିଶ୍ୱାସର ପଦ୍ମବନ ଜଳିପୋଡ଼ି
ଛାରଖାର ହୋଇଯାଏ ।
ସବୁ ମାଆ ଭିତରେ ଦେବୀଟିଏ
ସବୁ ମାଆ ଭିତରେ ଈଶ୍ୱରୀଟିଏ ଲୁଚିଥାଏ ।

•

## ଦେବୀ ଦର୍ଶନ

ଆଜିକାଲି ଦେବୀ ଦର୍ଶନରେ
କେହି ଆସନ୍ତି ନାହିଁ ଆମ ଘରକୁ ।
ଦେବୀ-ବସ୍ତ୍ରରେ ଝଟକୁଥିବା ସମୟ ଆଜି ସ୍ଥିର ।
ଧୂପରେ, ଝୁଣାରେ
ସମୟ ମହକୁନାହିଁ ଆଗପରି ।

ଦେବୀ ଲୁଗାଟିକୁ
ମା' କେଉଁଠି ରଖିଦେଇଛି ଯେ
ପାଉନାହିଁ ଖୋଜି ଖୋଜି ।

ସୁଦୂର ପ୍ରବାସରୁ
ସାନଭାଇ ଆସିବନି ଲେଖିଛି ଛୁଟିରେ ।
ମାଆ ଆଖିରେ ଆଜି ଅଶ୍ରୁ ନା ଆଶୀର୍ବାଦ ।

ଆଜିକାଲି ଦେବୀଦର୍ଶନରେ
କେହି ଆସନ୍ତିନାହିଁ ଆମ ଘରକୁ ।

•

## ଏଇ ଆମ ଶତାକ୍ଷୀ, ସର୍ବଜୟା

ସେଦିନ ପୃଥିବୀର ସବୁ ଆଲୁଅ
ଏକ ସଙ୍ଗେ ପଶି ଆସିଲା ଘରକୁ ।
ସେଦିନ ସବୁ ଟିକି ଚଢ଼େଇ
ସବୁ ଗୁଣ୍ଡୁଚିମୂଷାଙ୍କର
ଜନ୍ମଦିନ ପାଳିତ ହେଲା ଏକାଠି ।

ଆଗରୁ ଫୁଟି ପାରିନଥିବା
ଫୁଲସବୁ ସେଇ ଦିନ ହିଁ ଫୁଟିଗଲା ।
ସରଳ ନିଷ୍ପାପ ଶିଶୁଟିର
ମାଆ ମାଆ ଡ଼ାକ
ହସ୍‌ପିଟାଲ୍‌ର ସବୁ ନର୍ସଙ୍କୁ
ଅନ୍ୟମନସ୍କ କରିଦେଲା ।

ପାଖକୁ ଯାଇ ଦେଖିଲି
ସ୍ୱପ୍ନସବୁ ଦୋଳି ଖେଳୁଛି ତା ଆଖିରେ
ଓଠରେ ଲାଖି ରହିଛି
ରହସ୍ୟମୟ ହସ
ଶ୍ରୀକୃଷ୍ଣଙ୍କ ହସ ପରି ।

ଏଇ ଆମ ଶତାକ୍ଷୀ, ସର୍ବଜୟା
ଭଲଦିନର ହାତଧରି
ନେଇ ଆସିଛି ପୃଥିବୀକୁ
ମାଆମାନଙ୍କର
ଶେଷହୀନ ଦୁଃଖକୁ
ପୋଛି ଦେବାକୁ ।

•

## ମାଆର ଖୁସି ଆଜି ଆକାଶ ଛୁଇଁଛି

ଆସ କିଛି ବେଳ ଏଠି ବସିବା
ଏଇ ମାଟିର ବାସ୍ନାକୁ
ମନ ଭିତରେ ଭେଦେଇ ଦେବା ।

ଏଇ ମାଟିରେ ମୋ ଆଈ ସେଦିନ
ସୂର୍ଯ୍ୟ ନମସ୍କାର କରୁଥିଲା ।
ପ୍ରତିଦିନ ସକାଳେ ଉଠି
ସାଷ୍ଟାଙ୍ଗ ପ୍ରଣାମ କରୁଥିଲା ମାଟିକୁ
ମାଟିର ସହନ ଶକ୍ତିକୁ ।
ବେଳେବେଳେ ଆଈ କଥା କହି
ମାଆ କାନ୍ଦେ ।
ସାତବର୍ଷ ବୟସରେ ମାଆ ବାହାହୋଇ
ପରଘରୀ ହୋଇଯାଇଥିଲା ।

ଏଇ ଘରର ଚତ୍ୱର ଚାରିପାଖରେ
ମୋ ଆଈ ଅଜାଙ୍କର ପାଦଚିହ୍ନ
ଏବେବି ଉଜ୍ଜ୍ୱଳ ।
ମୁଁ ସେଇ ପାଦଚିହ୍ନକୁ
ପ୍ରଣାମ କରିବା ପାଇଁ ଏତେ ଦୂରରୁ
ଆଜି ଆସିଛି ।

ମହିମା ଧର୍ମରେ ଦୀକ୍ଷିତ ହୋଇଥିବା ଅଜାଆଇ
ମାଆ ପାଇଁ ସ୍ୱର୍ଗଠାରୁ ବି ବଡ଼ ।
ଏବେ ଏଇ ଅଶୀବର୍ଷ ବୟସରେ
ମାଆ ତା ବାପଘର ମନେ ପକାଇ ଝୁରିହୁଏ
ବାପଘରକୁ ଯିବା ପାଇଁ ଜିଦ୍‌କରେ ।
ଆଜି ମୋ ସାଙ୍ଗରେ ମାଆ ତା ବାପଘର ଆସିଛି
ମାଆର ଖୁସି ଆଜି ଆକାଶ ଛୁଇଁଛି ।

•

## ଦେବକୀ ହେବୁ ଯଶୋଦା ବି ହେବୁ

ବଡ଼ ହେଲେ ବୁଝିବୁ
ମାଆ ହେବା କେତେ କଷ୍ଟ
ଧାରୁଆ ତରବାରି ଉପରେ
ରାସ୍ତାପାରି ହେବା କଣ କମ୍ କଥା ।

ସଂସାରର କପଟତା
ଉଠାଣି ଗଡ଼ାଣି
ପାରିହେବା ପାଇଁ ହେଲେ
ପାହାଡ଼ ହେବାକୁ ହେବ ।

ପାହାଡ଼ ନ ହେଲେ
ବାରମ୍ବାର ଏମିତି
ଜିଅନ୍ତା ପୋଡ଼ି ଦିଆଯିବ
କିମ୍ବା ଗଳାରେ ଫାଶୀ ଦେଇ
ଝୁଲାଇ ଦିଆଯିବ ପଙ୍ଖାରେ ।

ପାହାଡ଼ର ନିଆଁ
ଆଗ୍ନେୟଗିରି ପାଲଟିଯାଏ ।

ସମୟ ଆସିଲେ ତୁ ବି ସେମିତି
ଆଗ୍ନେୟଗିରି ହୋଇଯିବୁ
ତୋର ଲାଭାରେ ସବୁ
ଦୁର୍ଭାବନା ପୋଡ଼ିଜଳି ଆପେ ଆପେ
ଛାରଖାର ହୋଇଯିବ ।
ତୁ ଦେବକୀ ହେବୁ, ଯଶୋଦା ବି ହେବୁ
ଈଶ୍ୱରଙ୍କ ଜନ୍ମ ପାଇଁ ବାଟ ଖୋଲିଦେବୁ ।

•

## ତୀର୍ଥରୁ ଫେରିଲା ପରେ

ତୀର୍ଥରୁ ଫେରି ଦେଖିଲା
ସବୁ ଭାଙ୍ଗିଯାଇଛି ।

ଘର ସାମ୍ନାର ତୁଳସୀ ଗଛ
ପିଢ଼ା ଉପରେ ନଟେଇଥିବା
ଛନ୍‌ଛନ ନାଉଗଛ ।
ଫୁଲରେ ଡାଳପତ୍ର ଭାଙ୍ଗିପଡୁଥିବା
ବଉଳ ଗଛ ।

କିଏ ଏତେ ନାରଖାର କରିଦେଲା
ସଂସାରକୁ ?
ଘୂର୍ଣ୍ଣିବାତ୍ୟା, ଭୂମିକଂପ
ସୁନାମୀ ।

ତୀର୍ଥରେ ଯଦି କିଛି ଅଘଟଣ ଘଟିଥାନ୍ତା
ଭୂମିକଂପରେ ପୃଥିବୀ ଟଳମଳ ହେଲାବେଳେ
ମାଆ କେଉଁଠି ଥାଆନ୍ତା ।
ସମୁଦ୍ରରେ ଭୂମିକଂପ
ପର୍ବତ ପ୍ରମାଣେ ପାଣିର ପ୍ରକୋପ
ସବୁ ସରିଗଲା ।

ବାରମ୍ବାର ମନେ ପକାଇ ଦେଉଛି
ଏ ଜୀବନ ଅନିଶ୍ଚିତ
ବାରମ୍ବାର ମନେ ପକାଇ ଦେଉଛି
ସଂସାର କେବଳ ମାୟାମରୀଚିକା ।

ସ୍ୱପ୍ନ ସବୁ ଭାଙ୍ଗିଯାଇଛି
ତାକୁ ଯୋଡ଼ିବାକୁ
ବେଳ କାହିଁ ?
ତୀର୍ଥରୁ ଫେରିଲା ପରେ
ମାଆ ଯେମିତି ବଦଳି ଯାଇଛି ।
ଜୀବନର ମାୟାମୋହ ଠାରୁ
ଦୂରେଇ ଯାଇଛି
ଆଗପରି ସେ ଆଉ ଘାରି ହେଉନାହିଁ ।

•

## ମଠାଶାଢ଼ିର ଦିନ

ପରସ୍ପରର ଦୋଷ ଦେଖିବାରେ
ପରସ୍ପରର ଭୁଲ୍ ଖୋଜିବାରେ
ଶଙ୍ଖମର୍ମର ଘରଟି
କଦାକାର ହୋଇଯାଇଛି ।

ସେଦିନର ମଠାଶାଢ଼ିର ଦିନସବୁ
କେଉଁ ଫାଙ୍କବାଟେ
କୁଆଡ଼େ ଗଳିପଡ଼ିଲା କେଜାଣି ।
ପାର୍ବଣ ଦିନରେ ପିନ୍ଧୁଥିବା
ମା'ର ପୁରୁଣା ମଠାଶାଢ଼ିଟି
ପୋକକାଟି ନାରଖାର କରିଦେଇଛି ।

ପିଲାଦିନେ 'ମୀନାବଜାର'ରେ
ମୋ କବିତା ଦେଖି ଖୁସିରେ

ଫାଟି ପଡୁଥିବା ବାପା ଆଜି
ଦୂର ଆକାଶର ନିରୁପାୟ ତାରା ।

ଦୁରନ୍ତ ଅଭିମାନକୁ ପୁଞ୍ଜିକରି
ସବାସାନଭାଇ
ବୁନିଆଦିର ସ୍ୱପ୍ନ ଦେଖୁଛି ।

ସେ ବୁନିଆଦି ବି
ପୋକରା ହୋଇଗଲାଣି
କେବେଠାରୁ ।

ସକାଳପହରୁ ମାଆ ମୁହଁ ଶୁଖାଇ
ଭାରତର ମାନଚିତ୍ର ପରି ବସିଛି ।
ତା'ର ବୋହୂ ହେବାଠାରୁ
ବୁଢ଼ୀ ହେବା ପର୍ଯ୍ୟନ୍ତ
ଦିନ ସବୁକୁ ସେ ନିଠେଇ ନିଠେଇ
ସ୍ମୃତିର ସୂତାରେ ଗୁନ୍ଥୁଛି ।

•

## ମାଆ ରନ୍ଧାଘର

ମାଆ ରନ୍ଧାଘର
ପୋଡ଼ପିଠା ବଡ଼ିଚୁରା
ମାଛ ବେସରର
ଏକ ବିମୁଗ୍ଧ ନଅର ।

ସେ ନଗ୍ରରେ ସକାଳରୁ ସଞ୍ଜଯାଏ
ଚରକି ଘୂରିଲା ପରି
ମାଆ ଘୂରୁଥାଏ ।

ଘର ଚାରିକଡ଼େ
ଆମ୍ବ ନିମ୍ବ ସପେଟା ନଡ଼ିଆ ଗଛ

କୁଟୁମ୍ବମାନଙ୍କ ପରି
ଉଦାର ବିଶ୍ୱସ୍ତ ।

ବାପା କବିଥିଲେ
ସଂସାରୀ ନଥିଲେ ।
ସଂସାରର ସବୁ ଗରଳକୁ ମାଆ ଏକା ପିଉଥିଲା
ତା' ପୂଜାଘରେ
ଲୁଚାଇ ରଖିଥିବା
ଦୁର୍ମୂଲ୍ୟ ଚିଜଟି ପାଇଁ
ସଂସାର ଏତେ ସୁନ୍ଦର ହୋଇଯାଉଥିଲା ।

ଆଜିକାଲି ସାଧା ଶାଢ଼ିରେ
ମାଆକୁ ଦେଖିଲେ
ଛାତି ଫାଟିଯାଏ ।
ପୂଜାଘର କି' ରନ୍ଧାଘର ହେଉ
ମାଆ ଥିଲେ ସବୁଘର ମନ୍ଦିର ପାଲଟିଯାଏ ।

•

## ମାଆର ଛାଇ

ମାଆକୁ କେବେହେଲେ ଆମେ
ସୂର୍ଯ୍ୟ ଦେଖିବାର ସୁଯୋଗ ଦେଇନୁ
ମାଆ ବିଷୟରେ ରଚନା ଲେଖି
ପୁରସ୍କୃତ ହୋଇଛୁ ଅନେକଥର ।
ମାଆର ଟିକିଏ ଛାଇ
ମୋ ଶୈଶବକୁ ସୁଗନ୍ଧିତ କରିଥିଲା
ଧମନୀର ପ୍ରତି ରକ୍ତକଣିକାରେ
ସ୍ୱପ୍ନର ଚାରାଗଛ
ଗୋପନରେ ପୋତିଦେଇଥିଲା ।

ସେହି ଛାଇରେ
କେତେ ବିଶ୍ୱାସ, କେତେ ଲୋଡ଼ିବାପଣ

କେତେ ପତିଆରା
ପଡ଼ିଉଠି ବାଟ ଚାଲିବାର କେତେ ଆଶ୍ୱାସନା ।

ମୋର ଅସନ୍ତୋଷ, ଉଦ୍‌ବେଗ
ମନ ଖରାପର ଦିନ
ସବୁରି ଭିତରେ ସେ ଛାଇ ଯେମିତି
ଏକ ଅଦ୍ଭୁତ କଳ୍ପଲୋକ
ସୀମାହୀନ ଆଲୋକିତ ଛାୟାପଥ ।

ଅକାତକାତ ପାଣିରେ
ସିଏ ଏକ ହୋଲି ଡଙ୍ଗା
ମାଟିଘର ଠଣାରେ
ପୁଲାଙ୍ଗତେଲର ଦୀପ
ସାତ ସମୁଦ୍ର ପାଣିରେ
ଯିଏ ବୁଡ଼େ ନାହିଁ କି
ଲିଭେ ବି ନାହିଁ ।

•

## ମାଆକୁ ଏବେ ଅଶୀବର୍ଷ

ବାପା ସବୁବେଳେ କହୁଥିଲେ
ପିଲାମାନେ ବଡ଼ହେଲେ
ମାଆକୁ ସେ ନେଇଯିବେ
ଉତ୍ତରଭାରତ ଦକ୍ଷିଣଭାରତ
ମାଆ ଦେଖିବ ସବୁ ତୀର୍ଥସ୍ଥାନ ।
ହଠାତ୍ ଦିନେ
କାହାକୁ କିଛି ନ କହି
ବାପା ଆକାଶରେ ତାରାଙ୍କ ମେଳରେ ମିଶିଗଲେ ।
ପିଲାମାନେ ବଡ଼ ହେଲାପରେ
ବଦଳିଗଲେ ଆପଣାଛାଏଁ ।

ମାଆକୁ ଏବେ ଅଶୀବର୍ଷ
ତୀର୍ଥ ଦେଖାଇବା ପାଇଁ
ଆଣିଛି ସାଙ୍ଗରେ ।
ବଦ୍ରିକା, ମଥୁରା
ହରିଦ୍ୱାର ପାଖରେ
ଗଙ୍ଗା ସ୍ରୋତରେ
ମାଆର ଆଖିଲୁହ
ମିଶିଗଲା ତୀର୍ଥ ଜଳରେ ।
ମାଆକୁ ଏବେ ଅଶୀବର୍ଷ
ମାଆର ଆଖିଲୁହ
ମିଶିଗଲା ଏଇ ତ୍ରିବେଣୀରେ
ମଥୁରା ବୃନ୍ଦାବନରେ ।
ବର୍ଷ ପରେ ବର୍ଷ ସରିଗଲା
ଅଶୀବର୍ଷରେ ଏବେ ମାଆ
କେହି କେବେ ପଚାରି ନାହାନ୍ତି
ମାଆ କ'ଣ ଭଲପାଏ
କଣ ଭଲ ନ ପାଏ ।
ତାକୁ ଭାଗଭାଗ କରି
ଟୁକୁରା ଟୁକୁରା କରି ଦେଇଛୁ
ଅନେକ ଦିନରୁ ।
ଏବେ ଆଉ ତାର ଭଲ ଲାଗିବା କଥା
ପଚାରି ଲାଭ କ'ଣ ।
ତାକୁ ଏବେ ଅଶୀବର୍ଷ
ତା ଛାତିତଳେ ଅସୁମାରି ଦୁଃଖ
ଆଖିରେ ପରଳ ।
ବହୁଦିନ ତଳେ
ଜରାନିବାସକୁ
ପଠାଇ ଦେବାର ଯୋଜନା ଥିଲା

ତୀର୍ଥ ଦର୍ଶନରେ ଯିବାକଥା
କେବେ କାହା ଭାବନାରେ ନଥିଲା ।
ଆଗରେ ଗଙ୍ଗାର ପବିତ୍ରଧାରା
ହିମାଦ୍ରୀ ତନୟା ।
ଦୀପାନ୍ୱିତା ସନ୍ଧ୍ୟାର ସମ୍ଭାର
ଗଙ୍ଗା ସ୍ରୋତରେ
ଏକାକାର ହୋଇଗଲା
ମାଆ ଆଖିଲୁହ ।
ମାଆର ଜିଦ୍
ସେ ରହିବ ହରିଦ୍ୱାରରେ
ଆଉ ଫେରିବନି ଘରକୁ
କାହିଁ ତାର ଘର ?
ଆସିଲାଣି ବର୍ଷେ ହେବ
କିଏ ବା ଖୋଜୁଛି ତାକୁ
ସବୁ ସୁଖ ସୌଭାଗ୍ୟ ସଂପତ୍ତି
ସମସ୍ତଙ୍କୁ ଦେଇ ସାରିଛି
ଆଉ କାହିଁକି ଫେରିବ ଘରକୁ ?

•

## ବିସର୍ଜିତା ମୂର୍ତ୍ତି ହୋଇ

ସେଦିନ ଗାଁରେ ମାଆକୁ ଭାଗକରାଗଲା
ସେଦିନ ଗାଁ ଆକାଶରେ ଜହ୍ନ ନଥିଲା
ତାରା ବି ନଥିଲା ।
ମଝିରେ ମଝିରେ ସମୁଦ୍ରର ଆର୍ତ୍ତନାଦ
ଯାହା ଶୁଭୁଥିଲା ।

ସେଦିନ ମାଆକୁ ଜମିବାଡ଼ି ସହ
ସମସ୍ତଙ୍କ ସାମ୍ନାରେ ଭାଗକରାଗଲା ।

ମାଆର ଭରଣପୋଷଣ ଭାର
ସାନଭାଇ ଅଧା ନେଲା
ଆଉ ଅଧେ ବଡ଼ଭାଇ
ସମସ୍ତଙ୍କୁ ସାକ୍ଷୀ ରଖି
ମାଆକୁ ଭାଗକରାଗଲା ।

ବିସର୍ଜିତା ମୂର୍ତ୍ତିପରି ମାଆ ବସିଥିଲା ଚୁପ୍‌ଚାପ୍
ଅପେକ୍ଷା କରୁଥିଲା
ବିସର୍ଜନ ପରେ
କେତେବେଳେ ତା'କୁ
ଉଜେଇ ଦିଆଯିବ ସମୁଦ୍ରରେ ।

କେତେବେଳେ ସମୁଦ୍ରରେ ତ
କେତେବେଳେ ଜରାନିବାସରେ
କେବେ ମାଟିଘର ଠଣାରେ
ଦୀପ ହୋଇ ତ
ଆଉ କେବେ
ତ୍ରିବେଣୀର ନିରାସକ୍ତ ମନ ନେଇ
ମାଆ ବସିଥିଲା
ବିସର୍ଜିତା ମୂର୍ତ୍ତିଟିଏ ହୋଇ ।

•

## ଜିଦ୍‌ଖୋର ପିଲାଦିନ

କେମିତି କେଜାଣି ଭୁଲିଅଛି ଏତେକାଳ
ଶେଷ ପଉଷର ଖରା ଆଉ ଛାଇ
ମଝିରେ ମୋ ଗାଁ ଘର ।

ସେଇ ଘରୁ ଶୁଭେ ମାଆର ମଧୁର ସ୍ୱର
ପ୍ରଥମାଷ୍ଟମୀ ଓ ମାଣବସା ଗୁରୁବାର

ଲକ୍ଷ୍ମୀପାଦର ଝୋଟି ଓ ମୁରୁଜ
ସ୍ୱପ୍ନ ସଜଳ ଦିନ ।

ଶେଷ ପଉଷର ଖରା ଆଉ ଛାଇ
ଜିଦ୍‌ଖୋର ପିଲାଦିନ
ସେହି ପିଲାଦିନ ଆକାଶରେ ଦିଶେ
ଅସଂଖ୍ୟ ଶଙ୍ଖଚିଲ ।

ବିଲ ବଣ ଘେରା
ସବୁଜିମାଭରା
ଦୂର ଗାଁ ମାଆ ଘର
ସେଇ ଘରୁ ଶୁଭେ
କବି ମନ ଭୁଲା
ଅଭୁଲା ସ୍ମୃତିର ସ୍ୱର ।

•

## ଜୀବନର ଏଇ କୁହୁକ ଭିତରେ

ଗାଁ ମାଟିଘର ଠଣାରେ ତୁ' ଏକ
ଅଲିଭା ଦୀପର ଧାରା
ସେଇ ଦୀପ ଶିଖା ଜଳୁଥିଲା ବେଳେ
ବାସୁଥାଏ ଘରସାରା ।

ସାତ ସାଗରଠୁଁ ଗଭୀର ତୋ' ମନ
ଆକାଶ ଠାରୁ ବି ବଡ଼
ଦେବୀ ବୋଲି ତୋତେ କେହି କହେ ଯଦି
ତା' ଠାରୁ ବି ମହୀୟାନ ।

ହୃଦୟ ଭିତରେ ଲୁଚାଇ ରଖିଛୁ
କେତେ ହୀରା ନୀଳା ସ୍ମୃତି
ପାହାନ୍ତି ଆକାଶୁ ଝରି ପଡୁଥିବା
କାକର ବିନ୍ଦୁର ମୋତି ।

ଦେବୀ ହୋଇ ଅବା ଦୀପଟିଏ ହୋଇ
ଲୁହ ବୁନ୍ଦାଏ ହୋଇ
ଜୀବନର ଏଇ କୁହୁକ ଭିତରେ
ନଳିଭୁ ତୋ' ମଧୁ ଛାଇ ।

•

## ଭାବୁଛି ଚିଠି ଲେଖିବି ମାଆକୁ

ବେଳେ ବେଳେ ଭାବେଁ
ଚିଠି ଲେଖିବି ମାଆକୁ
କ'ଣ ଲେଖିବି ଚିଠିରେ
ଶବ୍ଦସବୁ ଶୁଖିଗଲାଣି ବହୁ ଦିନରୁ
ବେଳେ ବେଳେ ସ୍ୱପ୍ନ ଦେଖେଁ ମାଆକୁ
ଅନ୍ଧାର ଭିତରେ
ଗୁରୁଣ୍ଡି ଗୁରୁଣ୍ଡି
କ'ଣ ଏତେ ଖୋଜି ଚାଲିଛି ସେ
ଖୋଜୁଛି ଆଉ କାନ୍ଦୁଛି ।

ମାଆମାନେ ଦୁଃଖରେ କାନ୍ଦିଲେ
ମୋତେ ଜମା ଭଲଲାଗେନି
ଅଥଚ ଏମିତି ସେମାନଙ୍କ ଭାଗ୍ୟ ଯେ
ଲୁହ ଛଡ଼ା କିଏ ଅଛି ସେମାନଙ୍କର
ଏତେ ଆପଣାର ।

ସେମାନଙ୍କ ଆପଣାର ଦୁଃଖକୁ
ଈଶ୍ୱର ବି ବୁଝିନାହାଁନ୍ତି ଆଜିଯାଏ ।

ବେଳେ ବେଳେ ଭାବେଁ
ମାଆକୁ ଲେଖିବି
ମୋ ପିଲାଦିନଟା

କେତେ ଭଲଥିଲା
ଠିକ୍ ଶରତ ସକାଳ ପରି
ମୋ ହାତରେ ଜହ୍ନ ଖସିପଡ଼ିବ ବୋଲି
ତୁ ମୋତେ ସ୍ୱପ୍ନ ଦେଖାଉଥିଲୁ ।

ସେଇ ସ୍ୱପ୍ନକୁ
ମୋ ଭିତରେ
ଆଜି ବି ସାଇତି ରଖିଛି ।

ମୋ ପୁଅକୁ ଜହ୍ନର ସ୍ୱପ୍ନ
ଦେଖାଇ ପାରିଲିନାହିଁ ବୋଲି ତ
ସିଏ ଆଜି
ସୁନାଖଣି ସଂଧାନରେ ବ୍ୟସ୍ତ ।

ମୋ ଭିତରେ ସେଇ
ସୁନ୍ଦର ଶୈଶବରେ
ଯେଉଁ ସୃଜନର ମଂଜିଟି
ଗୋପନରେ ପୋତି ଦେଇଥିଲୁ
ଦେଖ୍ କେତେ ବଡ଼ ହେଲାଣି
ସେ ସୁକୁମାର ଗଛଟି ।

ମୁଁ ଆଜି
ଆକାଶମୁଖୀ ହୋଇ ଅନାଇ ରହିଛି
କେବେ ନା କେବେ
ଜହ୍ନ ଆସି ଧରାଦେବ
ମୋ ହାତରେ ।

ବେଳେବେଳେ ଭାବେଁ
ଚିଠି ଲେଖିବି ମାଆକୁ
କ'ଣ ଲେଖିବି ସେ ଚିଠିରେ !



## ସୃଜନର ମଞ୍ଜି

ସେହି ଅବୋଧ ପିଲାଦିନ ଠାରୁ ଆଜି ପର୍ଯ୍ୟନ୍ତ ମୁଁ କେବଳ ଗୋଟିଏ କବିତା ହିଁ ଲେଖିଚାଲିଛି । ମୋ ଚେତନାରେ କେବଳ ଗୋଟିଏ ଅନୁଭବ । ମୁଁ ବୁଝିବାକୁ ଚେଷ୍ଟା କରିଛି ଏହି ଚେତନାର ମୂଳ ଉତ୍ସ କେଉଁଠୁ ଆରମ୍ଭ । ପ୍ରତି ମୁହୂର୍ତ୍ତରେ ମୋର ମନେ ହୋଇଛି କେଉଁ ଏକ ଦୂର ଗାଁର ମାଟିଘର ଠଣାରେ ଅଖଣ୍ଡ-ଦୀପ ହୋଇ ନୀରବରେ ଜଳୁଥିବା, ତୁଳସୀ ଚଉଁରା ମୂଳର ତିଳ ତଣ୍ଡୁଳିତ ଅନ୍ଧାର ଭିତରେ ସମସ୍ତଙ୍କ ପାଇଁ ପ୍ରାର୍ଥନା ପାଲଟି ଯାଉଥିବା, ଆଉ କେବେ ଅବା 'ଶଙ୍ଖନାଭି-ମଣ୍ଡଳ' ନିକଟରେ ଲୁହ ବିନ୍ଦୁଏ ହୋଇଯାଉଥିବା, ସଂସାରର ସବୁ ଗରଳକୁ ଏକା ଏକା ବିଶ୍ୱସ୍ତ ଭାବରେ ପାନ କରୁଥିବା ମଣିଷ ମୋରି ମାଆ । ସ୍ଥାବର, ଜଙ୍ଗମ, ଜଳସ୍ଥଳ ସବୁଠି ପରିବ୍ୟାପ୍ତ ତା'ର ଦୟା କ୍ଷମା କରୁଣା । ସେହି ସୁଦୂର ଶୈଶବରୁ ମୋତେ ଆଚ୍ଛନ୍ନ କରିଥିବା ମାଆର 'ବନଗିରି ଲତାଗିରି'ର ଗୂଢ଼ ରହସ୍ୟ କିମ୍ବା ଆତ୍ମାର ଆଲୋଡ଼ନ ଭିତରେ ଗାଁର ନୀରବ ଆକାଶକୁ ଆବେଗମୟ କରୁଥିବା 'ଯେସନେ କୀଟ ଉର୍ଣ୍ଣନାଭି'ର ଅଧାବୁଝା ଅଧା ଅବୁଝା ଗୀତର ସ୍ୱର ଲହରୀ ମୋ ପାଇଁ ଏକ ଦୁର୍ଲଭ ଅନୁଭବ ଥିଲା ସେଦିନ । ସୃଜନର ମଞ୍ଜିଟି ଆପେ ଆପେ ଡାଳପତ୍ର ମେଲିବାକୁ ଆରମ୍ଭ କରିଦେଇଥିଲା ସେହି କୈଶୋର ବୟସରୁ । ଗାଁର ସମୁଦ୍ର, ନଈ, ଆକାଶରେ ଅସ୍ତ ଜହ୍ନ ଦେଖି ଅନ୍ୟମନସ୍କତାରେ ବିଭୋର ଥିବାବେଳେ, କଳ୍ପନା ଆଉ ସ୍ୱପ୍ନର ଅଦୁଆ ତଦୁଆ ଜାଲ ବୁଣୁଥିବାବେଳେ ମୋ ଭିତରେ କବିତ୍ୱର ମଞ୍ଜିଟି କେବଳ ମାଆ ହିଁ ରୋପି ଦେଇଥିଲା ସେଦିନ । ସେହି ଅନନ୍ୟ ଅନୁଭବଟିକୁ ମୁଁ ଯାହା ଲାଳନ ପାଳନ କରି ଆସୁଛି ଆଜିଯାଏ ।

•

# ରାଞ୍ଚି ଗଲାବେଳେ; ତପସ୍ୱିନୀରେ

'ତପସ୍ୱିନୀ' ଗୋଟିଏ ଟ୍ରେନ୍‌ର ନାଁ ହେଲେ ବି
ଜଣେ କବିର ଆତ୍ମା
ଏଥିରେ ଗୁନ୍ଥି ହୋଇ ରହିଛି
ସେଦିନ କଣ ଏ ଜାତି ତମକୁ
ଚିହ୍ନିପାରିଥିଲା କବି ।
ତମେ ତ୍ରିକାଳଦର୍ଶୀ ଥିଲ କି ନା ମୁଁ ଜାଣେନି
ସାଧାରଣ ଜୀବନ ଭିତରୁ
ଅମୃତ ସାଗର ବିନ୍ଦୁର ସନ୍ଧାନ
କରୁଥିଲ ମୁଁ ଜାଣେ
ତମେ ଥିଲ ଅମୃତର କବି ।

ବରପାଲି କେମିତି ହୋଇଥିବ
ମୁଁ ଏଯାବତ୍ ଦେଖିନାହିଁ ।
ତମେ ଯେ ସ୍ୱପ୍ନ ବୁଣି
ଚାଲିଥିଲ ଶୈଶବରୁ
ସ୍ୱପ୍ନର ରଙ୍ଗରେ
ରଙ୍ଗାଉଥିଲ ତମ ଅଭାବୀ ସଂସାରକୁ ।
କବିର ଦୈନ୍ୟତା ନ ଥାଏ କେବେ
କବିଠାରୁ ଐଶ୍ୱର୍ଯ୍ୟମୟ
କିଏ ଥାଇପାରେ ସଂସାରରେ ।
ଜୀବନର ବିଭିନ୍ନ ଛକରେ
କେତେଥର ଭେଟିଛି ତମକୁ ।
କେତେବେଳେ କୋରାପୁଟର
ତମସା କୂଳରେ ତ
ଆଉ କେତେବେଳେ
ମଧ୍ୟପ୍ରଦେଶର ଅରଣ୍ୟଘେରା ଚିତ୍ରକୂଟରେ ।

ତମେ ଖାଲି ଓଡ଼ିଶାରେ ନୁହଁ
ତମ ମେଦିନୀ ଦୃଷ୍ଟି
ସଞ୍ଚରି ଯାଇଛି
ସାରା ଭାରତବର୍ଷରେ ।
ଆଜି ଝାଡ଼ଖଣ୍ଡ ରାଜ୍ୟର ରାଞ୍ଚିରେ ବି
ତମେ ମନେ ପଡୁଛ କବି ।
ତମର ଏ ତପସ୍ୱିନୀ ସାଧାରଣ କାବ୍ୟ ନୁହେଁ କି
ଟ୍ରେନର ନାଁ ମଧ୍ୟ ନୁହେଁ ।
ଏକ ଉତ୍ତରିତ ଜୀବନର
ଜଳଛବି ।
କବି ଆତ୍ମାର
ଦୃପ୍ତ ପ୍ରତିଧ୍ୱନି ।

ତପସ୍ୱିନୀ ଯଥେଷ୍ଟ ବିଳମ୍ବ ଆଜି
ମୁଁ ବିବ୍ରତ ନୁହେଁ ସେଥିପାଇଁ ।
ଅସରନ୍ତି ରାସ୍ତା ପାର ହେବା ପାଇଁ
ଜଣେ କବିର ଜାଗ୍ରତ ଚେତନା
ସଞ୍ଚରି ଯାଇଛି ମୋ ଭିତରେ
ପାହାଡ଼ ଜଙ୍ଗଲ ଘେରା ଝାଡ଼ଖଣ୍ଡ ରାଜ୍ୟ ।
ଅସୁରକ୍ଷିତ, ବିପଦ ସଙ୍କୁଳ ।
କେଉଁ ଆତତାୟୀର ତୀକ୍ଷ୍ଣ ତରବାରି
ଲୁଚି ରହିଛି ପାହାଡ଼ ଖୋଲର
ଅନ୍ଧାର ଭିତରେ ।
ମାଓବାଦୀମାନଙ୍କର ଅମାନୁଷିକତା
ବୋମା ହୋଇ କେଉଁଠି ନା କେଉଁଠି
ଗର୍ଜି ଉଠୁଛି
ଯେକୌଣସି ସମୟରେ ।
ମୁଁ କଳ୍ପନା ଜାଲରେ ଛନ୍ଦି ହୋଇଯାଇଛି
'ତପସ୍ୱିନୀ'ର ନୀରବତା ଭିତରେ ।

ମୁଁ ସ୍ୱପ୍ନ ଦେଖୁଛି
ଗୋଟିଏ ସୁନ୍ଦର ପୃଥିବୀର
ଯେଉଁଠି ସ୍ୱଭାବ କବି ଗଙ୍ଗାଧର
ସ୍ୱପ୍ନର ଲୁଗା ବୁଣୁଥିଲେ
ଜୀବନର ଯନ୍ତ୍ରଣା ଭିତରେ ।
ଜଣେ କବିର ଭାଗ୍ୟରେ
ଏମିତି କଣ ଥାଏ ଯେ
ନିଜେ ବିଷ ପିଇ ପିଇ
ଅମୃତ ବାଣ୍ଟିବାରେ ।

ମୁଁ ଜାଣେନି
ମୋତେ କାହିଁକି ଆହ୍ୱାନ କରାଯାଏ ଆସିବାକୁ
ବିପଦ ସଂକୁଳ ବାଟରେ
ବାରମ୍ବାର ଏଇ ତପସ୍ୱିନୀରେ
ମୋତେ ଆସିବାକୁ ହୁଏ ।

ତପସ୍ୱିନୀ ରକ୍ଷାକବଚ ପାଲଟିଯାଏ ମୋ ପାଇଁ
ବାରମ୍ବାର ଅନ୍ୟମନସ୍କ ହେବାକୁ ହୁଏ
ମୋ ଯିବା ରାସ୍ତାରେ ।
ବାରମ୍ବାର ଅନିଦ୍ରାରେ
ରାତି କଟାଇବାକୁ ପଡେ
କିପରି ଏକ ମୁଗ୍ଧତା ଭିତରେ ।

ତପସ୍ୱିନୀ ମୋତେ
ନେଇଯାଉଛି ଏକ ଉତ୍ତରିତ ଜୀବନ ପାଖକୁ
ଅନବରତ ଦଉଡୁଥିବା
ଜୀବନର ପ୍ରବାହ ଆଡ଼କୁ ।
ତପସ୍ୱିନୀ ଏକ ଟ୍ରେନ୍ ନୁହେଁ
ଏକ ଉତ୍ତରିତ ଅନୁଭବର ନାଁ ତପସ୍ୱିନୀ
ଜୀବନ ଖଣ୍ଡର
ବେଗବାନ ଧାରା ଏଇ ତପସ୍ୱିନୀ ।

•

## କୋମଳ ଗାନ୍ଧାର ରାଗ ଅଭ୍ୟାସ କରୁ କରୁ

ତାନପୁରାରେ କୋମଳ ଗାନ୍ଧାର ରାଗ
ଅଭ୍ୟାସ କରୁକରୁ
ହଠାତ୍ ଦିନେ ବଡ଼ ହୋଇଗଲା ଝିଅ ।

'ହରିଣ ନ ଦିଏ ଧରା, ଦଉଡ଼ନା ବଡ଼ ଖରା'
ଗୀତଟିକୁ କ୍ରମଶଃ ଭୁଲିଯାଉଥିଲା ।
ଖୁଙ୍କୁବୁଜିଆ ଝିଅଟି
ପୃଥିବୀ ପରି ସର୍ବଂସହା ହୋଇଗଲା ।

ମାଟି ସବାରି ଆଉ
ପିତଳ ଚାଙ୍ଗୁଡି ଧରି
ଖେଳୁଥିବା ଝିଅଟି
କେବେ କେବେ ମାଆର
ଦର୍ପଣ ପାଲଟି ଯାଉଥିଲା ।
ରଙ୍ଗ ଆଉ ତୂଳୀରେ
ଚିତ୍ର ଆଙ୍କୁଥିଲା
କବିତା ବି ଲେଖୁଥିଲା ।

ଝରଣା ପରି ଝରିଯାଉଥିବା ମନ ତାର
କ୍ରମଶଃ ନଈ ପାଲଟି ଯାଉଥିଲା ।
ତା ଭିତରେ ଅଥୟ ଜହ୍ନରାତିଟିଏ
ଅଣନିଶ୍ୱାସୀ ହୋଇ
ବାହାରିବା ପାଇଁ ବାଟ ଖୋଜୁଥିଲା ।

ଝିଅ ସ୍ୱପ୍ନ ଦେଖୁଥିଲା
ପୁଷ୍ପିତ ଉଦ୍ୟାନରେ
ଜହ୍ନରାତିର ସ୍ୱପ୍ନ ।
ଯେଉଁଠି ଏକ ଦର୍ପିତ ଛାଇର
ଉଜ୍ଜ୍ୱଳ ତରବାରିରେ ଝଲସି ଉଠୁଥିଲା
ପାହାଡ଼ ଖୋଲର ମେଞ୍ଚା ମେଞ୍ଚା ଅନ୍ଧାର ।

ଜଡ଼ଉ ଫଗୁଆ ଭିତରେ
ବନ୍ଦ କରିଦେଲା ଝିଅ ତାର
ସୁନ୍ଦର ପିଲାଦିନ
ପିତଳ ଚାଙ୍ଗୁଡି
ପ୍ରଜାପତିର ନାଲିନେଳି ପର
ଗଙ୍ଗଶିଉଳିର ସକାଳ ।

ନିଃସର୍ତ୍ତ ଆତ୍ମସମର୍ପଣ ଭିତରେ
ହଜେଇ ଦେଲା ସବୁ ସ୍ୱପ୍ନ ତାର
ବିଶ୍ୱସ୍ତ ଦୁର୍ଗ ଚାରିପାଖରେ
ଛିଞ୍ଚିଦେଲା ଭଲପାଇବାର ଗଙ୍ଗୋଦକ ।

ଖୁସିରେ ଅଛି ଝିଅ
ଦୁଃଖରେ ଥିଲେ ହୁଏତ ଗୀତ ଗାଉଥାଆନ୍ତା
ଚିତ୍ର ଆଙ୍କୁଥାଆନ୍ତା
କବିତା ବି ଲେଖନ୍ତା
ପ୍ରେମରେ ଆହୁରି ମଜଭୁତ
କରିଦେ ତୋ ଦୁର୍ଗ
ଅଶୁଭ ଶକୁନିର ଆଖି
ଯେମିତି ତା ଉପରେ ନ ପଡ଼େ କେବେ ।

•

## ଆଜିକାଲି ମାଆ ଆଉ ଘିଅଦୀପ କଥା ପଚାରେନି

ଫେରିଆସିବ କହି
ଠାକୁର ଘର ପିଲିସଜ ଉପରେ
ଘିଅ ଦୀପଟିକୁ
ମାଆ ଜଳାଇ ରଖି ଆସିଥିଲା,
ଦୀପଟି ହୁଏତ
ଲିଭିଯାଇଥିବ ହଠାତ୍ କେତେବେଳେ ।

ଅଷ୍ଟଧାତୁରେ ନିର୍ମିତ
ଦୁର୍ଗାଙ୍କର ମୂର୍ତ୍ତି ବି ଥିଲା
ଠାକୁର ଘର ଆସ୍ଥାନ ଉପରେ ।
ପ୍ରତିବର୍ଷ ଦୁର୍ଗାଷ୍ଟମୀରେ, ଦଶହରାରେ
ମଠା ଯୋଡ଼ ସହ
ସାନଭାଇର ଆବେଗ ଆଉ ନିଷ୍ଠା
ସେଇ ପୂଜାଘରେ ସେମିତି ଥିଲା ସାଇତା ହୋଇ ।

ପୁରୀର ଲକ୍ଷ୍ମୀମନ୍ଦିରରୁ ପାଟକନା ଘୋଡ଼ାଇ
ଧାନରେ ଲକ୍ଷ୍ମୀ ଠାକୁରାଣୀ ଥାପନା କରିଥିଲା
ମାଆ ସେଦିନ ।
ଲକ୍ଷ୍ମୀ ପାଦର ଝୋଟି ଭିତରେ
ସତେ କି ଲକ୍ଷ୍ମୀ ବିଜେ ହୋଇଥିଲେ ଆମ ଘରେ ।

ବାପାଙ୍କର ସ୍ୱପ୍ନ ବି
ବଡ଼ ଉଦାସ ଭାବରେ ସେ ଘରେ ଥିଲା
ଯତ୍ନ ନେଇ ହେଲାନି ସେ ସ୍ୱପ୍ନର ।
ମୁଁ କିଛି ବି କରିପାରିନାହିଁ
ଭାଙ୍ଗିଯାଉଥିବା ସଂପର୍କକୁ
ନା ଅସ୍ତ୍ରୋପଚାର ଟେବୁଲ ଉପରୁ
ଛିଟିକି ପଡୁଥିବା ସ୍ୱପ୍ନକୁ ।

ଆଜିକାଲି ମାଆ ଆଉ ଘିଅଦୀପ କଥା ପଚାରେନି
କି ଘରକୁ ଫେରିବ ବୋଲି କହେନି ।
ଚାଲୁ ଚାଲୁ ଥକିଗଲେ କି ଶୋଷ ହେଲେ
ପାଣି ମୁନ୍ଦାଏ ପାଇଁ ଘରକୁ ଗଲେ
କାହାକୁ ଡାକିବି
"ମାଆ କବାଟ ଖୋଲ୍
ଭାରି ଶୋଷ ।"



## ଶାଳପ୍ରାଂଶୁପରି

ଧୀରେ ଧୀରେ ବଡ଼ ହୋଇଗଲୁ
ଶାଳପ୍ରାଂଶୁପରି
ସବୁ ଅବୟବ ମେଲି ଅନାଇଲୁ ଆକାଶ ଆଡ଼କୁ
ହୁଏତ ହଳଦୀବସନ୍ତଟିଏ ଲୁଚିଥିଲା
ତୋ ହୃଦୟର ଗହନ ବନରେ
ତା ହୋଇନଥିଲେ
ଶୂନ୍‌ଶାନ୍ ଅନ୍ଧାର ଭିତରେ
ତୋ ଗୀତ ଶୁଭୁଥିଲା
ହଳଦୀବସନ୍ତର ଗୀତ ପରି ।

ଶୂନ୍‌ଶାନ୍ ନିଶୂନ୍ ରାତିରେ
ଗୀତ ଗାଇଲୁ, କବିତା ଲେଖିଲୁ
ଚିତ୍ର ବି ଆଙ୍କିଲୁ ।
ହଳଦୀବସନ୍ତ ଯେମିତି ଗାଏ
ଅବିକଳ ସେଇ ଗୀତ
ହୁଏତ ହଳଦୀବସନ୍ତଟିଏ ଲୁଚିଥିଲା
ହୃଦୟର ଗମ୍ଭୀରା ଭିତରେ ।

ଆଜିକାଲି କେବଳ
ଅସ୍ତ୍ରୋପଚାରର ଦୃଶ୍ୟ ଛଡ଼ା
ଆଉ କିଛି ସ୍ୱପ୍ନରେ ଆସେ ନାହିଁ
ଆଜିକାଲି ଗଛକଟାଳିର ଶବ୍ଦ ଛଡ଼ା
ଆଉ କିଛି ଶୁଣାଯାଏ ନାହିଁ ।
ଶାଳପ୍ରାଂଶୁ ଗଛଟି ଦେହରୁ
ଝର୍‌ଝର୍ ରକ୍ତ ଝରି ଚାଲିଥାଏ ଅହର୍ନିଶ ।

•

# ଜନ୍ମଲଗ୍ନ

ସେତେବେଳେ ସମଗ୍ର ସମୟ ଥିଲା କାଳବେଳା
ରାତିଥିଲା ଘନ କାଳରାତି ।
ଗାଁ ଆକାଶରେ ଡାଆଣୀ, ଚିରଗୁଣୀଙ୍କ ଚିତ୍କାର
ରହି ରହି ଶୁଭୁଥିଲା ।
ମାଆ ଥିଲା ଏକଲା ଗାଁ'ରେ
ବାପା ପ୍ରବାସରେ
ସେହି ସମୟ ଥିଲା ମୋର ଜନ୍ମଲଗ୍ନ ।

ସ୍ୱାତୀ କିମ୍ୱା ବିଶାଖା ନକ୍ଷତ୍ର
ସେତେବେଳେ ଆକାଶରେ
ନିଶ୍ଚୟ ଉଦୟ ହୋଇନଥିବ ।
ସେ ବେଳା ଅମୃତ ନ ହୋଇ
କାଳବେଳା ହୋଇଥିବ ।

ଆଜି ପବନର ଚାପା ଚାପା କାନ୍ଦଣାରେ
ମନେପଡ଼େ ପିଲାଦିନ
ଶୈଶବର ଗାଁ ।
ବାପା ତମେ ପ୍ରବାସରୁ ଉଡି ଆସିଥାନ୍ତ ହେଲେ
ମାଆ ଥାନ୍ତା ତମରି ପାଖରେ
ଯତ୍ନରେ ।

ମୋ ଜନ୍ମଲଗ୍ନକୁ
ତମେ ଲେଖି ରଖିଥାନ୍ତ
ତମ ହୃଦୟ ଭିତରେ ।
ହୁଏତ ଆଜି ମୁଁ ମହମବତିର
ସରିଯିବା ଦୃଶ୍ୟ ଦେଖି
ମୋ ଜନ୍ମଲଗ୍ନକୁ ନିନ୍ଦୁ ନଥାନ୍ତି
ଏକୁଟିଆ ନର୍ସିଂହୋମରେ ।

•

## ସାନଭାଇ

ଲୋକକଥାର ସେଇ କଞ୍ଚନ ଗଛ ମୁଁ
ତମ ସାନଭାଇ ।
ଯାହା ମାଗୁଛ ମାଗ
ସବୁ ଦେଇ ଯିବି ।
ରକ୍ତ ମାଗିଲେ ରକ୍ତ ଦେବି
ଜୀବନ ମାଗିଲେ
ଜୀବନ ଦେବି ।

ମୁଁ ଈଶ୍ୱରଙ୍କୁ କେବଳ ଗୋଟିଏ କଥା ମାଗିଥିଲି
ଲୋକକଥାର କଞ୍ଚନ ଗଛ ହେବା ପାଇଁ ।
ହେମନ୍ତ ସକାଳରେ ଫୁଲ ଫୁଟିଲେ
ଅପା ଦେଖି ଲୁଚାଇ ଲୁଚାଇ କାନ୍ଦିବ
ଭାଇ କହିବ
କୁଳାଙ୍ଗାରଟା
ଶେଷରେ ଗଛ ହୋଇ ଜନ୍ମିଲା ।

ମାଆ କହିବ
ମୋ ଆଖିର ମଣିକୁ
ସେମିତି କୁହନିରେ
ତାକୁ କାଟିବ ।
ମୋ ମାଆକୁ ମୋ ଅପାକୁ
ଅସୁମାରି ଅଭାବୀ ମଣିଷମାନଙ୍କୁ
ମୁଁ ରକ୍ତ ଦେଇ ବଞ୍ଚାଇଛି ।

ଶେଷରେ
ତମମାନଙ୍କୁ ଦେଇ ଯିବି
ମୋର ଅବଶିଷ୍ଟ ଆୟୁଷ
ଲୋକକଥାର ସେଇ କଞ୍ଚନ ଗଛ ମୁଁ
ତମ ସାନଭାଇ ।

•

## ବାନପ୍ରସ୍ଥରେ

ଯାହା ଯାହା ଶୁଣିବାକୁ ଚାହିଁଥିଲ ସବୁ ଶୁଣ
ମୋର ଅନ୍ୟମନସ୍କତା, ଅସ୍ଥିରତା
ଅଯଥାରେ ପାହାଡ଼ ଚଢ଼ିବାର
ଅହମିକା
ସାରାଟା ଜୀବନ
ଯାହାକୁ ତିଳକ କରି
ହୃଦୟରେ ଘେନିଛ
ଏତେ କାଳ
ସେଇ ସବୁ କଥା ଶୁଣ ।
ଅନ୍ଧାରକୁ ତମେ ଅନ୍ଧାର ନ କହିଲେ ବି
ଆଲୁଅକୁ ଆଲୁଅ ନ କହିଲେ
ମୁଁ ଆଉ ମନରେ ଗଣ୍ଠିକରୁନାହିଁ ଆଗପରି ।

ଆଜି ଏତେ ବର୍ଷ ପରେ
ଛାଇ ଆଲୁଅର ଜୀବନ ଭିତରେ
ଲୁହ ଲହୁକୁ ଫେଣ୍ଟାଫେଣ୍ଟି କରି
ମୁଁ ବୁଝିସାରିଛି
ସାନ ପିଲାଟିଏ
ଯେମିତି ମନ ପାଇଲେ ଖୁସିହୁଏ
ମନ ନ ହେଲେ ନାହିଁ
ତମେ ସେମିତି ।

ବନେଇ ଚୁନେଇ କଥା କହିଆସେ ନାହିଁ ବୋଲି
ଚୋଟ ଖାଇଚ ଅନେକଥର ।
ପାଖରେ ଥିଲେ ବା ନଥିଲେ
ପଚାରିହେଉଥାଅ କାହୁବାଡ଼ ସମସ୍ତଙ୍କୁ
ସାନପିଲା ପରି ।

ଢେରହେଲା ସଂସାର
ଏ ଘରକରଣା ।
କୃପଣଙ୍କ ପରି
ସାଇତି ରଖିଲ ସାରାଜୀବନ
ପୁଣ୍ୟ, ଧର୍ମ ଆଉ କର୍ମ
ସବୁ ସେମିତି ଥାଉ
ଏଣିକି ଆସ ସାଙ୍ଗ ହୋଇ
ଚାଲିଯିବା ବାନପ୍ରସ୍ଥରେ ।

•

## ବାପଘର (୨)

ଢେର୍ ଦିନରୁ ବାପଘର ମୁହଁ ଦେଖିନି କାଦମ୍ବିନୀ
ବାପଘର କଥା ମନେ ପଡ଼ିଲେ ଆଜିକାଲି
ଶାଗ କାଟୁ କାଟୁ ହାତ କଟିଯାଏ ।
କେତେ ଝୁରିହେବା ବେଳ
ଭୁଲ୍ ବୁଝାବୁଝି ଦିନ
ସବୁ ଏକାବେଳେ ମନେପଡିଯାଏ ।

ଢେର୍ ଦିନରୁ ବାପଘର ମୁହଁ ଦେଖିନି କାଦମ୍ବିନୀ
ପିଲାଦିନେ ତାକୁ କାଦ ଅପା ଡାକୁଥିଲେ ଗାଁରେ ।
ସହରକୁ ଆସିଲା ପରେ
କାଦ ଅପା କେମିତି
ମରିଗଲା ଭିତରେ ଭିତରେ ।

କେତେ ରଜ କେତେ ସାବିତ୍ରୀ
କେଉଁ ବାଟରେ କୁଆଡେ ହଜିଯାଇଛି
ପୁଅ ଫୋନ୍ କରୁଛି
ଏଥର ଚାଲିଆସ ଆମେରିକା
କଣ ଅଛି ସେ ଘରେ ଯେ
ପଡି ରହିଚ ମିଛଟାରେ ।

ଆମେରିକାରେ ଜୀବନ ଅଛି
ଆସିଲେ ଦେଖିବ ।
ମୂଳଟାକୁ ଓପାଡି ନେଇ
କେମିତି ଆମେରିକା ଯାଇ ପାରିବ କାଦ ଅପା
ଛିଣ୍ଡା ଚେରକୁ ଧରି
ମଣିଷ କଣ ଜିଇଁପାରେ ।

ବାପଘର ଗାଁ'ରେ
ଘୂର୍ଣ୍ଣିବାତ୍ୟା କି ଝଡ଼ ହେଲେ
ସେ ଖବର ତ ସେ ପାଉଛି ।
ଏଇଠି ରହି ଗାଁ'ର ଗଇଣ ଫୁଟା ରତୁକୁ
ମଦରଙ୍ଗା ଶାଗ ଖରଡା ବାସ୍ନାକୁ ବାରିପାରୁଛି ।

କିଛି ନ ହେଲେ ବି
ଚୁଲିଆଚୁଟି ଚଢ଼େଇଟି
ଘୁମୁରୁଥିବା ବେଳେ
ଛୁଆଦିନ ଛାଇଟିଏ ହୋଇ
ଆସି ଚୁପ୍‌ଚାପ୍ ପାଖରେ ଛିଡା ହେଉଛି
ଆଉ ବେଶୀ କଣ ଲୋଡା ବଞ୍ଚିବାରେ ।

ବାଟ ଚାଲୁଚାଲୁ ବାଲିରେ ପୋତି ହୋଇଯାଉଛି
କେତେ ମଧୁର ଅନୁଭବ
ଫୁଲ ଗଛରେ ପାଣି ଦେଉ ଦେଉ
ସେଇସବୁ ପିଛିଲା ଦିନକୁ
ଆଉଥରେ ଆଉଁଶିବାକୁ
ମନ କରୁଛି କାଦମ୍ବିନୀ ।

ବାପଘର ଗୋହିରି ଡେଇଁ
ଏ ଘରକୁ ଆସିଲା ବେଳେ
ସେ କଣ ଭାବିଥିଲା ମୂଳଟାକୁ

ଦିନେ ଏମିତି ଓପାଡିବାକୁ ପଡିବ ବୋଲି
ମଝି ଦରିଆରେ ଭାସୁଥିବା
ଡଙ୍ଗା ଦିନେ କୂଳକୁ ଫେରିଆସେ
କାଦମ୍ବିନୀ ହୁଏତ ଦିନେ ଫେରିଆସିବ
ବାପଘର ଆଲୁଅ ପାଖକୁ ।

•

## ବାପଘର (୩)

ତମେ କ'ଣ ଭାବୁଛ
ମୋର କେବେ ଇଚ୍ଛା ହୁଏନି
ବାପଘର ଯିବାକୁ ।
ତମର ଏଇ ସୁରକ୍ଷିତ ବଳୟ ଭିତରୁ
ମୁକୁଳି ଯାଇ
ଶୁନ୍‌ଶୁନିଆ, ମଦରଙ୍ଗା ଶାଗ ପଟାଳିକୁ
ଟିକିଏ ଆଉଁଶିବାକୁ ।

ଚୂନ ସୁରକି ଖସିପଡୁଥିବା
ଦଲାଣ ଉପରେ ବସି
ଛୁଆ ଦିନକୁ ଝୁରି ହେବାକୁ ।

ଯେତେ ଯାହା ଖାଲଢିପ ଥିଲା ଜୀବନରେ
ଏଇ ଦେଖ କେମିତି ସମାନ କରିଦେଇଛି
ରକ୍ତ ବିନିମୟରେ ।

ସମସ୍ତଙ୍କ ସବୁ ଇଚ୍ଛା ପୂରଣ କଲାବେଳେ
ପକ୍ଷୀପରି ନିର୍ବାକ୍ ହୋଇଯାଇଛ ବେଳେବେଳେ
ଶୂନ୍‌ଶାନ୍ ଖରାବେଳେ
ବାପଘର ବେଶୀ ବେଶୀ ମନେପଡ଼େ
ଆଉ କେବେ ଆକାଶରେ
ମେଘ ଢୁଲୁକିଲେ

ନିଃଶବ୍ଦ ରାତିରେ ବିଲୁଆ ଭୁକିଲେ
ବାପଘର ଭାରି ମନେପଡେ ।

ଏବେ ଦିନ ସରିଗଲା ବେଳେ
ବେଶୀ ବେଶୀ ମନେପଡ଼େ ଛୁଆଦିନ
ବାପଘର ଗାଁ
ଚୂନ ସୁରକି ଖସିପଡୁଥିବା
ସାତ ପୁରୁଷର
ବୁନିଆଦି ଘର ।
ସବୁ ଝିଅଙ୍କର ବାପଘର
ସୁଗନ୍ଧିତ ସ୍ମୃତିର ନଅର ।

•

## ପରୀ ଚିତ୍ର ଆଙ୍କୁଛି

ସୁନ୍ଦର ପୃଥିବୀକୁ ଦେଖିବ ପରୀ
ଖୁସି ହେବ
ତାକୁ ବନ୍ଦ କରନି ଚାରିକାନ୍ଥର ପଥର ଭିତରେ ।

ପରୀ ଜହ୍ନ ଦେଖିବ
ଜହ୍ନରେ କ'ଣ ଥାଏ ପଚାରିବ
ତା ମାଆକୁ ବିରକ୍ତ କରିବ ପରୀ
ତା ମାଆ ଦିନେ ପଚା ନାଉ ହେଉ ହେଉ
ହଠାତ୍ ବଡ଼ ହୋଇଗଲା
ଜହ୍ନ କଥା ଭୁଲିଗଲା ।
ପ୍ରଜାପତି ଧରୁ ଧରୁ
ସବୁ ଶ୍ରେଣୀର ସିଡି ଉପରକୁ
ଉଠିଗଲା ।

ପ୍ରଜାପତି କେଉଁଠି ରହେ
ସେ କଥା ଆଉ କେବେ ବି ପଚାରିଲାନି ।

ନାନା ରଙ୍ଗର ଫୁଲ ଦେଖି
କେତେ ଖୁସି ନ ହେଉଥିଲା ସିଏ ।

ଗଙ୍ଗଶିଉଳି ଗୋଟଉ ଗୋଟଉ
ହଠାତ୍ ସିଏ କିଶୋରୀ ହୋଇଗଲା
ତା’ ଝିଅ ପରୀ
ଗଙ୍ଗଶିଉଳି ଦେଖି ଚିତ୍ର ଆଙ୍କୁଛି
ଫୁଲ ଗଛରେ ପାଣି ଦେଉ ଦେଉ
ଗୀତ ଗାଉଛି ।

ପରୀର ବୟସ ମାତ୍ର ତିନିବର୍ଷ
ତେର ବର୍ଷ ହେଲେ ପରୀ ଆଉ ପ୍ରଜାପତି ଧରିବନି ।
ପାଠପଢ଼ାର ଚାପରେ
ପରୀ ସ୍ୱପ୍ନ ଦେଖିବାକୁ ଭୁଲିଯିବ ।
ମୋ ଝିଅ ଏବେ ବି ସ୍ୱପ୍ନ ଦେଖୁଛି
ଅଗ୍ନାଅଗ୍ନି ବନସ୍ତର ସ୍ୱପ୍ନ
ଅସୁରୁଣୀ ବୁଢ଼ୀର ସ୍ୱପ୍ନ ।
ସ୍ୱପ୍ନର ଜାଲ ବୁଣୁବୁଣୁ
ଝିଅ ଦିନେ ବୁଢୀ ହୋଇଯିବ ।

ସେଦିନ ପରୀ ଆଖିରେ
ମାୟାଅଞ୍ଜନ ବୋଳି ଦେଇଥିବ
ଜଣେ ରାଜକୁମାର ।
ପରୀ କହିବ ମାମା ଦେଖ
ଫୁଲରେ କେମିତି ବାସ୍ନା
ଭାରି ଭଲ ଲାଗୁଛି ।

ତା ମାଆ କଣ ଆଶ୍ଚର୍ଯ୍ୟ ହେବ
ଏକଥା ଶୁଣି
ତା ମାଆ କ’ଣ କଷ୍ଟ ପାଇବ ଏ କଥା ଶୁଣି ?

ରାଜକୁମାରୀ ବେଶରେ
ପରୀ ବସିବ ସବାରି ପରି ଦିଶୁଥିବା
ଉଡ଼ାଜାହାଜରେ ।

ପରୀର ପାଠପଢ଼ା ସରିଯାଇଥିବ
ପିଲାଦିନ ପରି
ତା ମାଆ ଆଉ ଟିଫିନବକ୍ସ ସଜାଡୁ ନଥିବ ।
ବାପା ହୁଏତ ଥିବ ପ୍ରବାସରେ
ତା ମାଆ ବଡ଼ ଏକୁଟିଆ ହୋଇଯାଇଥିବ ।

ପରୀ ଚାଲିଯାଇଥିବ ତା ପ୍ରିୟ
ପୁରୁଷ ସହିତ ବିମାନରେ
ବିଦେଶକୁ ।
ମାଆ ଥିବ ଏକୁଟିଆ
ସେମିତି ଥୁଆ ହୋଇଥିବ
ସ୍କୁଲ ବ୍ୟାଗ୍, ଟିଫିନବକ୍ସ ।

ମାଆ ତାର ଅପେକ୍ଷା
କରୁଥିବ କେବେ ଫେରିବ
ପରୀ ବିଦେଶରୁ ।
ପରୀ ତଥାପି ଫେରୁନଥିବ
ମାଆ ଅପେକ୍ଷା କରୁଥିବ
ପରୀ ଆସିଲେ
ତିଆରି କରିବ ତା ମନ ପସନ୍ଦର
କେତେ ନା କେତେ
ହଳଦୀ ପତ୍ରରେ
ପୁରଦିଆ ପିଠା
ନାଉ ଆଉ ନଡ଼ିଆରେ
ସୁଆଦିଆ ପୋଡପିଠା ।

ପରୀ କ'ଣ କିଛି ବୁଝିପାରୁନଥିବ
ତା ମାଆ ଏବେ ବଡବେଶୀ ଏକୁଟିଆ
ଖାଲି ଇମେଲ ପଠାଉଥିବ
ମଝିରେ ମଝିରେ
ବୟସ ଅଟକି ଯାଉ ଏଇଠି ।

ଜହ୍ନ ଦେଖି,
ଫୁଲ ସହିତ ଖେଳ ।
ପ୍ରଜାପତି ପଛରେ ଗୋଡ଼ାଇ ଗୋଡ଼ାଇ
ଥକିଯାଆ ପରୀ
ବୟସ ଅଟକି ଯାଉ ଏଇଠି ।
ଏଇ ତିନି ବର୍ଷରେ ।

•

## ଆଜି ପରୀର ଜନ୍ମଦିନ

ପରୀ ଆଜି ସିମଲା ବୁଲି ଯାଇଛି
ବାପାମାଆ ସାଙ୍ଗରେ
ତା ଜନ୍ମଦିନରେ ।

ଟୟ ଟ୍ରେନ୍‌ରେ ବସି
ପରୀ ମେଘ ଦେଖୁଥିବ
ଫୁଲ ଦେଖୁଥିବ
ପ୍ରଜାପତି ଦେଖି
ଖୁସିରେ କୁରୁଳି ଉଠୁଥିବ ।

ପରୀ ଧୀରେ ଧୀରେ ବଡ଼ ହେବ
ତା' ମାଆ ପରି ହେବ
ଅରଣ୍ୟର ଗଛପରି
ହଠାତ୍ ଦିନେ ବଡ଼ ହୋଇଯିବ

ମୁଁ ସେଦିନ ହୁଏତ ନଥିବି
ସେ ପ୍ରତିବର୍ଷ ସିମଳା ଯିବ
ଜନ୍ମଦିନରେ
ପ୍ରତିଥର ବସିବ ଟୟ ଟ୍ରେନ୍‌ରେ ।

•

## ଖେଳସ୍କୁଲ ପରୀର

ପରୀ ସ୍କୁଲ ଯାଉଛି, ଖେଳସ୍କୁଲ
ସ୍କୁଲ ମାନେ ପରୀ ବୁଝିନାହିଁ
ଖେଳ ସ୍କୁଲ ଯାଉ ଯାଉ ବଡ଼ ସ୍କୁଲ ଯିବ ।

ବଡ଼ ସ୍କୁଲର କାରଖାନା ଭିତରେ
ପରୀ ଚିହ୍ନିବ ଜୀବନକୁ
ସମୟକୁ
ସହପାଠୀମାନଙ୍କୁ ।

ପରୀକ୍ଷାର ପ୍ରସ୍ତୁତି ଭିତରେ
କେତେ ରାତି ତା'ର ଭୋର ହୋଇଯିବ
କେଉଁ ସୁଦୂର ଡାଳିମ୍ବ ଲବଙ୍ଗ ଦ୍ୱୀପର
ସ୍ୱପ୍ନରେ ପରୀ ବିଭୋର ହେବ ।

ମୁଁ ନଥିଲେ ବି ମୋ ବହିମାନେ ଥିବେ
ଖଣ୍ଡିଏ ଖଣ୍ଡିଏ ବହି
ପରୀ କାଢ଼ିବ ବହିଥାକରୁ
ଆଶ୍ଚର୍ଯ୍ୟ ହୋଇ ଦେଖିବ
ପଚାରିବ ତା' ମାଆକୁ
ତୋ ମାଆ କବିଥିଲେ
କବିତା ଲେଖୁଥିଲେ
ଲୁହରେ ନା କାଳିରେ ମାମା ?

ତା' ମାଆ ଫେରିଯାଉଥିବ
ସୁଦୂର ଅତୀତକୁ ।

•

## ଏବେ ଖାଲି ଚିତ୍ର ଆଉ ଚିତ୍ର

ଏବେ ଖାଲି ଚିତ୍ର ଆଙ୍କୁଛି ପରୀ
କେତେ ନା କେତେ ଚିତ୍ର ।
ନଈର ଚିତ୍ର
ଆକାଶର ଚିତ୍ର
ସମୁଦ୍ରର ଚିତ୍ର
ସବୁ ଛୁଆଙ୍କର ପିଲାଦିନ
ଏମିତି ସୁନ୍ଦର ରଙ୍ଗବେରଙ୍ଗର ଚିତ୍ର ।

ଏବେ ଏବେ ଗୀତ ଗାଇଲାଣି ପରୀ
ଫୁଲଙ୍କର, ତାରାଙ୍କର
ସଭିଙ୍କର ଗୀତ ।

ଆହୁରି ଆହୁରି ଗୀତ ଗାଉ ପରୀ
ଆହୁରି ଆହୁରି ଚିତ୍ର ଆଙ୍କୁ ।

ସବୁ ଚିତ୍ରରେ ରହୁ
ଖୁସି ଆଉ ଆନନ୍ଦର ରଙ୍ଗ
ସବୁ ଗୀତ ଜୁଡୁବୁଡୁ ହୋଇଯାଉ
ସ୍ୱପ୍ନର ବାସ୍ନାରେ ।
ପରୀ ସ୍ୱପ୍ନ ଦେଖୁ
ଜୀବନକୁ କୋଳେଇ ନେବାର ସ୍ୱପ୍ନ ।

ପରୀର ଚିତ୍ର ଆଉ ଗୀତରେ
ମହକି ଉଠୁ ଜୀବନ
ମହକି ଉଠୁ ସମୟ ।

•

## ରୂପକଥାର ପରୀ

ରୂପକଥାର ପରୀଟି ଆସି
ଆମ ପରୀ ସହ ସଙ୍ଗାତ ବସିଲାଣି
ସେ ପରୀ ନାଁ କ'ଣ
'ନେହା' ନା 'ଶତାକ୍ଷୀ' ନା ଆଉକିଛି ।

ପରୀ ରାଗୁଛି
ପରୀ ରୁଷୁଛି
ପରୀ କାନ୍ଦୁଛି
ପୁଣି ହସୁଛି ।

କାନ୍ଦିଲେ ପରୀ
ଫୁଲମାନେ ମଉଳିଯିବେ
ପ୍ରଜାପତିମାନେ
ମୁହଁ ଶୁଖାଇ ବସିବେ ।

ପରୀ ସେମିତି ହସୁଥାଉ
କୋଟି କୋଟି ମନ୍ୱନ୍ତର ।

•

## ପରୀ କବିତା ଲେଖୁଛି

ଏଥର ଦେଖିଲି
ପରୀର ଚିତ୍ର ସବୁ
ହୋଇଯାଉଛି କବିତା ।

ଖନେଇ ଖନେଇ
ତା ମାତୃଭାଷାରେ
ଗପ କହିଲା ବେଳେ
ଗପରେ ଡେଣା ଲାଗିଯାଉଛି ଆପେ ଆପେ ।

ଗପମାନେ ଉଡିଯାଉଛନ୍ତି ଆକାଶକୁ
ତାରା ଫୁଲ ହୋଇ
ଜହ୍ନମାମୁଁ ହୋଇ ।

ପୁଣି ପରଦିନ ସଞ୍ଜରେ
ଫେରି ଆସୁଛନ୍ତି ପରୀ ପାଖକୁ
ଡିସେମ୍ବରର ଖ୍ରୀଷ୍ଟମାସ ଟ୍ରି ହୋଇ
ଶାନ୍ତାକ୍ଲଜ ହୋଇ ।

ପ୍ରଜାପତି ଡେଣାର ଔଜ୍ଜ୍ୱଲ୍ୟ
ପରୀ ହାତରେ
ପରୀର କୁନି କୁନି ପାପୁଲି
ପ୍ରଜାପତି ପାଲଟି ଯାଉଛି ।

ଆଜିଠାରୁ ପ୍ରଜାପତିଠାରୁ ରଙ୍ଗ ନେଇ
ଚିତ୍ରରେ ରଙ୍ଗ ଭରିଦେବ ପରୀ
ଚିତ୍ର ହୋଇଯିବ କବିତା ।

ପରୀ କବିତା ଲେଖିବ
କେତେ ରଙ୍ଗବେରଙ୍ଗର ପେନ୍‌ସିଲ୍
ନୂଆ ନୂଆ ମାଲ୍‌ଗୁଡ଼ିଡେ'ର ଗପବହି
କାର୍ଟୁନ ସିଡି
ଶାନ୍ତାକ୍ଲଜ ଉପହାର ରଖିଛନ୍ତି ପରୀ ପାଇଁ ।

ପରୀ ସ୍ୱପ୍ନ ଦେଖୁଛି
ଗତ ରାତିରେ
ତା ପନିଟେଲ୍ କିଏ ନେଇଯାଇଛି ।
ପନିଟେଲ୍ ଯାଇ
ଚୁଳିଆଚୁଟି ଚଢ଼େଇ ଲାଞ୍ଜରେ ଲାଖିଯାଇଛି ।

ପରୀ କାନ୍ଦୁଛି ନିଦରେ
ପରୀର କୁନି ସାଙ୍ଗ 'ନେହା' ଆସି କହୁଛି

ପରୀ, ଦେଖ ତୋ ପନିଟେଲ୍
ତୋ ମୁଣ୍ଡରେ ଅଛି ।

ଆହା, କେଡ଼େ ସୁନ୍ଦର ପରୀର ଛୁଆଦିନ
ପରୀ ନୂଆବର୍ଷର ଚିତ୍ର ଆଙ୍କୁଛି
ରଙ୍ଗବେରଙ୍ଗ ଚିତ୍ର ସବୁ
ସମସ୍ତଙ୍କ ପାଇଁ ପଠାଉଛି ।

ପରୀର ଚିତ୍ର ତ ମଣିମୁକ୍ତା ମୋ ପାଇଁ
ହୃଦୟର ପାଟକନା ଦେହରେ
ଗୁଡେଇକି ରଖିବି ପାଖରେ ।
କେବେ ବି ଧୂଳି ଲାଗିବାକୁ ଦେବିନି ତା' ଦେହରେ ।

ମାଆରେ, ତୁ ଆହୁରି ସୁନ୍ଦର ସୁନ୍ଦର ଚିତ୍ର ଆଙ୍କ୍
ଚିତ୍ର ସବୁ କବିତା ହୋଇଯାଉ
କବିତାରେ ଭରିଯାଉ ସୁଗନ୍ଧ
ପ୍ରଜାପତିର ରଙ୍ଗ
ଫୁଲର ରଙ୍ଗ
ଜୀବନର ରଙ୍ଗ ।

•

## ପରୀ ପାଇଁ ଚିଠିଟିଏ

ପରୀ, ତୁ ବଡ଼ ହେଲେ
କଣ ହେବୁ ମା'
କବି ହେବୁ ନା ବିଜ୍ଞାନୀ ହେବୁ ?

ତୁ ତ ଜାଣିନୁ
କବି ହେବା କେତେ କଷ୍ଟକର
ପ୍ରତିଦିନ ସକାଳ ହେଲେ
ଦୁଃଖର ନଈକୁ

ଅତିକ୍ରମ କରିବା
ସଂସାରଯାକର
ସବୁ ଓଜନିଆ ବୋଝକୁ
ମୁଣ୍ଡରେ ନଦି
ରାସ୍ତାପାରି ହେବା ।

ତୁ ପାରିବୁ ତ ମା
ଘୃଣା ଆଉ ଅନାଦରକୁ
ଚନ୍ଦନ ପରି ଦେହରେ
ବୋଳିପାରିବୁ ତ ?
ତୁ ଖାଲି ଏତିକି କରିବୁ
ଆଈ ପାଇଁ ସ୍ମୃତିର
ମନ୍ଦିରଟିଏ
ତୋ ହୃଦୟ ଭିତରେ
ତିଆରି କରିବୁ ।

ସେ ମନ୍ଦିରରେ
ପ୍ରବେଶାଧିକାର
ଖାଲି ତୋରି ରହିବ
ଆଉ କାହାର ନୁହେଁ ।

ତୋ ଆଈର କବିତା ବହି
ସବୁକୁ
ମଥାରେ ଛୁଆଁଇ ରଖିବୁ ।

ଆଈର ଦୁକୁଦୁକି
ତାରି ଭିତରେ ରହିଛି
ବୋଲି ଜାଣିବୁ ।

ପରୀ, ତୁ ବଡ଼ ହେଲେ
କଣ ହେବୁ ମା'
କବି ନା ବିଜ୍ଞାନୀ ?

ତୁ ବଡ଼ ହେଲେ କବି ହେବୁ
କବିତା ଲେଖିବୁ
ସ୍ୱପ୍ନର ସାମ୍ରାଜ୍ୟ ଭିତରେ
କବିତାର କୀର୍ତ୍ତିସ୍ତମ୍ଭ
ନିର୍ମାଣ କରିବୁ ।

ମୁଁ ନଥିବି ସେଦିନ
ଫୁଲ ଫୁଟୁଥିବ
ଝରି ପଡୁଥିବ ଆଗପରି
ବର୍ଷାରେ, ଶୀତରେ
ବସନ୍ତରେ ।
କେଉଁ ଫୁଲ ପ୍ରିୟ ଫୁଲ
ମୋର
ତୁ ବୁଝିସାରିଥିବୁ ।

•

## ବଡ଼ସ୍କୁଲ

କେତେ ସୁକୁମାର ଫୁଲର ପାଖୁଡ଼ାପରି
ଝୁରୁଝୁରୁ ସ୍ୱପ୍ନପରି ଆମର ଏଇ କୁନି ପରୀ ।
ତା ସ୍କୁଲବ୍ୟାଗ୍, ଟିଫିନ୍‌ବାକ୍ସ, ପାଣି ବଟଲ୍
ସବୁକୁ ସେ କେମିତି ସାଇତି ରଖିଛି ବଡ଼ ଯତ୍ନରେ ।
ପରୀ ପଢୁଛି ବଡ ସ୍କୁଲରେ ଡିପିଏସ୍‌ରେ ।

ବଡସ୍କୁଲ ମାନେ
ଫୁଲ ଆଉ ପ୍ରଜାପତି ଦେଖି
ନେଉଳ ଦେଖି ଖୁସି ନହେବା ।
ବଡସ୍କୁଲ ମାନେ ଅସଂଖ୍ୟ ବହି
ଆଉ ଖାତା ଗଦାତଳେ
ନିଜ ସ୍ୱପ୍ନକୁ ଚାପିଦେବା ।

ବଡ଼ସ୍କୁଲ ଚାରିକାନ୍ଥ ଭିତରେ ବସି
ଜୀବନକୁ କମ୍ପ୍ୟୁଟର
କରିଦେବା ।

ବଡ଼ସ୍କୁଲ ପାସ୍ କରି ବିଦେଶ ଯିବ ପରୀ
ପଢ଼ିବାକୁ କମ୍ପ୍ୟୁଟର ପାଠ ।
ମାଆ ପାଖରେ
ଛାଡିଯିବ ତା ପିଲାଦିନ କଣ୍ଢେଇ
ଟିଫିନ୍‌ବକ୍ସ, ନାଲିନେଳି ପେନ୍‌ସିଲ୍ ।

ବଡସ୍କୁଲ ମାନେ ଖାଲି
ପ୍ରତିଯୋଗିତାର ଦଉଡରେ
ରାତିଦିନ ଅନିଦ୍ରାରେ କଟାଇବା ।
ଅଜାଆଈ, ମାମୁଁ ମାଈଁଙ୍କର
ସ୍ନେହ ଆଉ ମମତାର ଚିତ୍ରିତ ପୃଥିବୀକୁ
ପୂରାପୂରି ଭୁଲିଯିବା ।
ବେଳ କାହିଁ ଏତେ କଥା ପାଇଁ
ଖାଲି ସିଏ ଏସ୍‌ଏମ୍‌ଏସ୍ ପଠାଇବ ।

ପରୀ ବଦଳି ଯାଇଛି
ବଡ଼ସ୍କୁଲ ପରୀକୁ
ବଦଳାଇ ଦେଇଛି ।
ପରୀର ପ୍ଲେସ୍କୁଲ ଭଲ ଥିଲା
କଣ୍ଢେଇ ଥିଲା
ବେଲୁନ୍ ଥିଲା
ରଙ୍ଗବେରଙ୍ଗର ଚିତ୍ର ଥିଲା
"ଟାରେଜମିନ୍‌ପର" ଗୀତ ଗାଇ
ନାଚୁଥିଲା ପରୀ
ପରୀର ପ୍ଲେସ୍କୁଲ ଭଲ ଥିଲା ।

ବଡ଼ସ୍କୁଲ ପରୀକୁ
ବଦଳାଇ ଦେଇଛି ।
ବାପ ମାଆ ଆଖିରେ କେତେ ସ୍ୱପ୍ନ
ପରୀ ବଡ଼ ହେବ
ବିଜ୍ଞାନୀ ହେବ
ଆଇଏଏସ୍ ହେବ
ପରୀର ମାଆ ଆଖିରୁ
ନିଦ ହଜିଯାଇଛି ।

ପରୀ ବଡ଼ସ୍କୁଲ ଯାଉଛି
ସକାଳ ଛଅରେ
ସ୍କୁଲ ବସ୍
ଠିକ୍ ସମୟରେ ସ୍କୁଲ ବସ୍ ଆସୁଛି ଯାଉଛି
ସାନସାନ ଛୁଆଙ୍କୁ ସେ
ବଡ଼ସ୍କୁଲ ନେଉଛି ଆଣୁଛି
ବଡସ୍କୁଲ ଦିଲ୍ଲୀ ଲଡୁ ପରି ।

ବଡ଼ସ୍କୁଲ
ଯାଉଯାଉ ପରୀ ଦିନେ ବଡ଼ ହୋଇଯିବ ।
ବିଦେଶ ଯିବ ଗବେଷଣା ପାଇଁ
ବିଦେଶ ମାୟାରେ
ପରୀ କ'ଣ ସତରେ ପଡ଼ିବ ।

କୁହୁକ ଜାଲରେ ଛନ୍ଦି ହୋଇ
ଭୁଲିଯିବ ତା ମାମାକୁ
ଯିଏ ଦିନେ ପରୀ ପାଇଁ
ନିଜ ଜୀବନକୁ ତୁଚ୍ଛ ମଣୁଥିଲା
ପରୀଥିଲା ତା ଆଖିର ମଣି
ପରୀ ତାର ଭବିଷ୍ୟତ
ପରୀ ତାର ବର୍ତ୍ତମାନ ।

ସିଏ ଆଉ ଫେରିବନି ବିଦେଶରୁ
ସାତସମୁଦ୍ର ସେପାଖରେ
ପାପା, ମାମା
ଏପାଖରେ ପରୀ ।
ଅଜାଆଈଙ୍କ କଥା
ନ କହିବା ଭଲ
ସେମାନେ ତ ଝରାପତ୍ର
ଯେକୌଣସି ସମୟରେ
ଝରିଯିବେ ସଂସାରରୁ ।
ପରୀକୁ ବଦଳାଇ ଦେଲା
ବଡ଼ସ୍କୁଲ ।

•

## କୁନି ଝିଅ ପାଇଁ କକମିନା

ଏଇ କୁନି ଝିଅ ପାଇଁ
ମୁଁ କେତେ କବିତା ଲେଖିବି
କେତେ ଗୀତ ବି ଲେଖିବି, କକମୀନା ଗୀତ ।

ସେ ବଡ଼ ହେଲେ ପଢ଼ିବ
ଖୁସି ହେବ, କକମୀନା ଆଣିଦିଅ କହିବ ।
ମୁଁ କୋଳରେ ବସାଇ ତାକୁ ଝୁଲାଇବି
ପଚାନାଉ କରିବି
ଚକାଚକା ଭଉଁରୀ ଗୀତରେ
ମାମୁଁଘର ଚଉରୀ ଭିତରେ
ଲୁଚକାଳି ଖେଳିବ ।

ଆଉଦିନେ କୁନି ଝିଅଟିକୁ ଗାଁକୁ ମୁଁ ନେଇଯିବି
ସେଠାରେ ସେ ସମୁଦ୍ର ଦେଖିବ
ପାହାଡ ଦେଖିବ

ନଈ ଦେଖି ସେ ଗୀତଟିଏ ପରି
ଖୁସିରେ ନାଚିବ, ଗୀତ ଗାଇବ
ପ୍ରଜାପତି ସାଙ୍ଗରେ ଖେଳିଖେଳି ଥକି ପଡ଼ିବ ।

'ଗୁଣ୍ଡୁଚିମୂଷା' ପଛରେ ଦଉଡିବ
'ନେଉଳ ଭାଇ ନମସ୍କାର' କହି
ସେ ତା ସହ ସଙ୍ଗାତ ବସିବ ।
ବିଲୁଆନନାର ହୋକେ-ହୋ
ବରଗଛରେ ଝୁଲୁଥିବା ବାଦୁଡି ସହିତ
ତାକୁ ପରିଚିତ କରିଦେବି ।

ଆମ ଘର ଶଙ୍ଖୀ ବିଲେଇର ଲାଞ୍ଜ ଧରିବାକୁ
ସେ ଜିଦ୍ କରିବ ।
ଗାଁ ପୋଖରୀର ନାଲି, ନେଳି କଇଁ ଦେଖି
କହିବ ''ମୋତେ ଆଣିଦେ, ଆଣିଦେ''
ବାଡିରେ ଫୁଟୁଥିବା ହଳଦୀଫୁଲ
ତରାଟ ଫୁଲ, କଞ୍ଚନ ଫୁଲ ସହିତ ସାଙ୍ଗ ହେବ ।

ମୁଁ ତାକୁ କହିବି
ଆ, ମୋ ସାଙ୍ଗରେ ଆ
ମୋ ପିଲାଦିନର ଗଛମାନଙ୍କୁ ତୋତେ ଦେଖାଇ ଦେବି ।
ଏଇ ଯେଉଁ ବଡ଼ ବଡ଼ ପତ୍ରର ଆଖିରେ
ଆମ୍ବଗଛ ତୋତେ ଚାହିଁଛି
ତା ନାଁ ଲାଟ୍ ସୁନ୍ଦରୀ ଆମ୍ବ
ଭାରି ମିଠା ।

ପ୍ରକାଣ୍ଡ ତାଳପତ୍ରରେ ନିଜକୁ ଢାଙ୍କି ରଖିଥିବା
ଗଛଟିର ନାଁ ଓଉଗଛ
ପିଲାଦିନେ ତା ମୂଳରେ ପାଣି ଢାଳି
ତାକୁ ବଡ଼ କରିଛି ମୁଁ
ତା ପାଖ ପୋଖରୀରେ

ତା ଛାଇ ପଡି କେମିତି ସ୍ୱପ୍ନଟିଏ ତିଆରି
ହୋଇଯାଇଛି ପାଣିରେ ।

ସାନସାନ ବଣି ଚଢ଼େଇ, ଘରଚଟିଆ
ଅପେକ୍ଷା କରିଛନ୍ତି ତୋ ସହିତ ଖେଳିବା ପାଇଁ
ତୁ ମୋର ସୁନାଝିଅ
ଅତି ସୁକୁମାର
ଆ ମୋ କୋଳକୁ ଆ
ତୋ ମାଆର ଆଖିର ପିତୁଳି
ଯୁଗ ଯୁଗର ତପସ୍ୟା ପରେ
ତୁ ଆସିଛୁ ତା କୋଳକୁ
ଆଲୋକିତ କରି ।

•

## ତୁ ତୋ ପରି ହେବୁ

ତୋ ମାଆ ଆଖିର ଜ୍ୟୋତିହୋଇ
ତୁ ଆସିବୁ ମୁଁ ଜାଣେ ।
ବାପା ଆଖିର ସ୍ୱପ୍ନର ଅଞ୍ଜନ ବୋଲି
ତୁ ଆସିବୁ ମୁଁ ଜାଣେ ।

ସେତେବେଳେ ମୋର ଅବଶିଷ୍ଟ ଆୟୁଷ
ତୋତେ ଦେଇଦେବି ।
ମୋର ସବୁ ସୁକୃତିର ଆଲୋକରେ
ଆଲୋକିତ କରିଦେବି ।

ଆଶୀର୍ବାଦର ପବିତ୍ର ଜଳରେ
ଧୋଇଦେବି ସବୁ ଅଶୁଭକୁ ।
ତୁ ବଡ଼ ହେଲେ ବୁଝିବୁ
ଏ ଜୀବନ ଯେତେ ଜିଦ୍‌ଖୋର

ହେଉପଛେ
ତା'ଠାରୁ ଅଧିକ ମଧୁର ।

ତୁ କାହାପରି ହେବୁ ନାହିଁ
ତୁ ଖାଲି ତୋ ପରି ହେବୁ
ପୃଥିବୀର ଭଲଦିନ ପାଇଁ
ବାଟ ଖୋଲିଦେବୁ ।

•

## କେମିତି ଅଛରେ

ତମେ ଦୁହେଁ କେମିତି ଅଛ
ଖୁସିରେ ଅଛ ନା ନାହିଁ
ଦେଖିବା ପାଇଁ
ଚାଲି ଆସେ
ସାତ ସମୁଦ୍ର ତେର ନଈ ପାର୍ ହୋଇ ।

ସମୁଦ୍ର ପାର୍ ହେବା
ଏତେ ସହଜ ନୁହେଁ
ସଂସାରର ସବୁ ନିଅଣ୍ଟିଆ
ଅନୁଭବକୁ
ସାଉଣ୍ଟି ଆଣେ ଆସିଲା ବେଳେ ।

ସତରେ କଣ ଭଲରେ ଅଛ
ତମେ ଦୁହେଁ ?
କାହିଁ ଆଗପରି
ଆଗ୍ରହ ଝଲମଲ ଆଖିରେ
ଦଉଡି ଆସୁନ ତ ଦାଣ୍ଡକୁ ।

ଗାଁ'ରୁ କଣ ଆଣିଛି ବୋଲି
ଖୋଲି ପକାଉନ ତ ବେଗ୍ ଗଣ୍ଠିଲି ।

ସବୁ ଆଗ୍ରହ ଆଉ ଆବେଗ
କଣ ଅଟକିଗଲା ଗୋଟିଏ ଜାଗାରେ ।

ତମେ ଦୁହେଁ ବଦଳି ଯାଇଛ
ନା ସମୟ ବଦଳାଇ ଦେଇଛି ?
ତମେ କେବେଠାରୁ
ଉଡି ଶିଖିଲଣି ବୋଲି
ନିଜକୁ ବୁଝାଇ ପାରୁନି ମୁଁ ।

ହଠାତ୍ ଏମିତି ଚାଲିଆସିଲି ବୋଲି
ଖରାପ ଭାବିଲ କି
କେମିତି ଅଛରେ
ଭଲ ଅଛ ନା ?

•

## ସ୍ୱର୍ଗଦ୍ୱାର କିମ୍ୱା ହରିଦ୍ୱାର

ହଠାତ୍ ଦିନେ ସୂର୍ଯ୍ୟାସ୍ତରେ
ଯିବାକୁ ପଡ଼ିବ ବୋଲି
କେମିତି ଜାଣନ୍ତା
ନିରୁତା କବିଟିଏ
କ'ଣ ଅବା ଦିଅନ୍ତା କାହାକୁ ।

ସବୁବେଳେ କହୁଥିଲା
ଫଗୁଣ ଖେଳୁଛି ଦୋଳି
ସୁନାରି ଗଛରେ
ସିଏ କ'ଣ ଜାଣିଥିଲା
ଏମିତି ଚାଲିଯିବ ବୋଲି ଅବେଳରେ
ଏଥର ପୂଜା ଆସି ପୂଜା ଚାଲିଗଲା
ଏଥର ଅଶିଣରେ

ଗଙ୍ଗଶିଉଳି ଫୁଟି ଝରିଗଲା
କାଶତଣ୍ଡିରେ ଭରିଗଲା
ସାଳନ୍ଦୀ ।

ଏଥର ନବରାତ୍ରରେ
ଆକାଶରେ ସଞ୍ଜତାରା ଉଇଁ ସାରିଥିଲା ।
ଲକ୍ଷ୍ମୀପୂଜା ପାଇଁ
ସବୁ ପ୍ରସ୍ତୁତି ସରିଯାଇଥିଲା ।

ନିଃଶବ୍ଦ ରାତିରେ ବାରମ୍ବାର ଡାକୁଥିଲା
କିଏ ଜଣେ ମାଆ, ମାଆ ।
ଏଥର ନବରାତ୍ରରେ
ଉପାସନା ସରିଥିଲା
କେହି ଜଣେ ଆସିବା ଆସିବା
ପରି ମନେ ହେଉଥିଲା
ସ୍ୱର୍ଗଦ୍ୱାରରୁ ନା ହରିଦ୍ୱାରରୁ
କିଏ ଜାଣେ ।

•

## ମାଓବାଦୀ ଘେରରେ

ଆଜି ମାଛିଅନ୍ଧାରରୁ
ମୁଁ ଟ୍ରେନ ଭିତରେ
ପାହାଡ଼ି ଜଙ୍ଗଲର ଅନ୍ଧାରୁଆ କୋଣରୁ
ବଣୁଆ ଚଢ଼େଇଟି
ଅନାଇ ରହିଛି ବଡ଼ ବଡ଼ ଆଖିରେ
ଆଗ୍ରହରେ ।

ମୁଁ ତା ଦେଶର ନୁହେଁ
ଏକଥା ସେ ପରଖି ସାରିଛି ।

ଚାରିପାଖରେ
ପହରା ଦେଉଛି ପାହାଡ଼ ।
ପାହାଡ଼ ତଳର ମାଟିକୁ ବିଦାରି କରି
ଗର୍ଜି ଉଠୁଛି ବୋମା, ମାରାଣାସ୍ତ୍ର ।

ଚାରିଆଡେ ଆତଙ୍କର ଭୟଙ୍କର
ଲୋମଶ ହାତ ମେଲିଯାଇଛି
ଷ୍ଟେସନରେ, ଏରୋଡ୍ରମରେ
ବିଶ୍ୱବିଦ୍ୟାଳୟରେ ।
ଆଜି ମାଛିଅନ୍ଧାରରୁ
ମୁଁ ଟ୍ରେନ ଭିତରେ
ମାଓବାଦୀ ଘେରରେ ।

•

## ଗଣତନ୍ତ୍ର ନଥିପତ୍ର ତଳେ

ଆଜି ଯେତେବେଳେ କ୍ରାନ୍ତିର ପତାକା ଉଡୁଛି
ଚାରିଆଡ଼େ
ଶିଶୁ କନ୍ୟା ହତ୍ୟାର ବୀଭତ୍ସ କରୁଣ ନାଟକ
ଅଭିନୀତ ହୋଇଗଲା
ଏଇଠି ଏଇ ଭାରତରେ
କିଛିଦିନ ତଳେ ।

ହେଇ ସେଦିନ ଆତ୍ମହତ୍ୟା କଲେ
ଚାଷୀକୁଳ ବୁଭୁକ୍ଷାର ତାଡନା ଭିତରେ
ଏଠି ସବୁ ଠିକ୍ ଅଛି କାଗଜପତ୍ରରେ
ରେକର୍ଡରେ ।

ଅଧିକ ଖୋଳତାଡ କଲେ
ଏ ରାଜ୍ୟର ବୁନିଆଦି ଭାଙ୍ଗିଯାଇପାରେ
ଷାଠିଏ ବର୍ଷ କିଛି କମ୍ ନୁହେଁ ।

ସବୁଠୁ ବିସ୍ମୟ ଲାଗେ
ମାରାତ୍ମକ ଅଦ୍ଭୁତ ଭୂତାଣୁ ଆସି
କେଉଁଠୁ କେଜାଣି
ନିରୀହ ଲୋକଙ୍କର
ରକ୍ତ ଶୋଷିନିଏ ।

ଏଠି କିଛି ନିର୍ଭେଜାଲ ନୁହେଁ
ଏପରିକି ଔଷଧ ବି
ସବୁ ଏଠି ମିଶ୍ରିତ ଭେଜାଲ
ବିଦେଶୀ ପୁଞ୍ଜିର ମୋହ
ଭାଙ୍ଗିଦିଏ ଜୀବନର ସବୁ ମୂଲ୍ୟବୋଧ ।

କାହିଁକି ଲୁଣ୍ଠିତ ହେଲା
ଭାରତରୁ
ଐଶ୍ୱର୍ଯ୍ୟ ଓ ଅମୂଲ୍ୟ ବୈଭବ ।

ଏ ଦେଶର ସବୁଠାରୁ ବୁଦ୍ଧିମାନ ଛାତ୍ର ବି ତ
କିଣା ହୋଇ ଚାଲିଯାଏ ବିଦେଶକୁ
ଭାରି କରୁଣ ଦିଶୁଛି
ବାପା ମାଆଙ୍କର ମୁହଁ
ବିଦେଶକୁ ଥରେ ଯିଏ ଗଲା
ଗଲା ପୁତ୍ର ବାହୁଡି ନଇଲା ।

ବିଦେଶୀ କମ୍ପାନୀ ସହ
ଚୁକ୍ତିନାମା ଦସ୍ତଖତ କରି
ଉଲ୍ଲସିତ ହେଉ ମନେ ମନେ
ଆମ ଅଜାଣରେ ସେମାନଙ୍କ ନିକଟରେ
କେତେବେଳେ ବିକା ହୋଇଯାଇ ସାରିଥାଉ ।

ଆଜି ଏଇ କ୍ରାନ୍ତି ପତାକା ତଳେ
କିଏ କାନ୍ଦୁଛି ଏମିତି ମୁହଁପୋତି

ଷାଠିଏ ବର୍ଷର ମୁହଁ
ବୟସ୍କ ଲୋକଟିଏ ପରି ବଡ଼ କରୁଣ ବିଷଣ୍ଣ ତା ମୁହଁ ।

ଏଇ କଣ ସେଇ
ଚାନ୍ଦିଆ ଟୋପି, ଲକ୍ଷ୍ମୀବାଈ
ଗାନ୍ଧି ଗୋପବନ୍ଧୁ ଆଉ ଅରବିନ୍ଦ ।

କେଉଁ ଆତତାୟୀ
ଧାରୁଆ ନଖରେ
କ୍ଷତବିକ୍ଷତ ହୋଇ ଯାଇଛି ସ୍ୱାଧୀନତାର ଶରୀର ।

କିଏ ଆଜି ହରିନେଲା ଦେଶପ୍ରେମ
ଆମରି ମନରୁ
ଦେଶ ଦେଶ ବୋଲି
ମିଛ ଅଭିନୟ କରୁଥିବା ମଣିଷମାନଙ୍କୁ
ଏ ଦେଶର ସାନ ପିଲାଟିଏ.
ଭଲ ଭାବେ ଚିହ୍ନିସାରିଲାଣି
ଗଣତନ୍ତ୍ର ନଥିପତ୍ର ତଳେ ସବୁଠି ଥିବାର ମର୍ମ
ସେ ବୁଝି ସାରିଲାଣି ?

•

## ଦେଶର ସୁଗନ୍ଧ

ଏଠାରେ ମିସିସିପି ନଈ ଅବା ନାଏଗ୍ରା କୂଳରେ
ମୋ ଦେଶ ଭାରି ମନେପଡ଼େ ।
ସ୍ମୃତିର ଫୁଲରେ ଭରା ସୁଗନ୍ଧିତ ମୋ ଦେଶ
ଯାହାର ପ୍ରତିଟି ଅକ୍ଷର
ଖୋଦିତ ଓ ଚିତ୍ରାଙ୍କିତ
ମୋ ଚେତନାରେ ।
ବଡିଘର ସନ୍ଧାନରେ
ଉବୁଟୁବୁ ହେଉଥିବା

ଭାସମାନ ବୋଇତର ନଙ୍ଗର ନଥିବା ଦୃଶ୍ୟ
ବାରମ୍ବାର ମୋ ଆଖିରେ ପଡ଼େ ।

ଝୁଲାମରା ମନ ନେଇ
ଭାରତର ଚାଷୀଟିଏ ଧାନ କାଟୁଥିବା ବେଳେ
କାର୍ତ୍ତିକ କାକରରେ ସିଏ କଣ
ବୁଝିଥିବ ସ୍ୱାଧୀନତା ମାନେ ।
ଷାଠିଏ ବର୍ଷ ତଳେ ବି ସେଦିନ
ସେ ବୁଝି ନ ଥିଲା ଏ କଥାର ମାନେ ।

ଆକାଶ ଦୀପଟି ଯେବେ
ଦିକିଦିକି ଜଳେ
ସେଇ ସବୁ ଦିନକଥା ବିଦେଶରେ
ମୋ ମନକୁ ଘାରେ ।

ଲାଇଲାକ୍ ଫୁଲ ଅବା ବ୍ଲିଡିଂହାର୍ଟରେ
ସୁଗନ୍ଧ ଖୋଜିଲା ବେଳେ
ମୋ ଗାଁ'ର ବଉଳ ଓ କିଆଫୁଲ
ବେଶୀ ମନେପଡେ ।

ଭାରତର ନଈନାଳ କିଆବଣ
ଗୋହିରି ଓ ନୟନଯୋରି
କୁନିକୁନି ପିଲାଙ୍କର ବୋହୂଚୋରି ଖେଳ
ହରିଦ୍ୱାର, ଋଷିକେଶ
ମହେନ୍ଦ୍ର ତନୟା କିମ୍ବା ଗୋଦାବରୀ
ସ୍ୱର୍ଣ୍ଣାଭ ସକାଳ ।

ଆଜି ଏଇ ବିଦେଶିନୀ ମିସିସିପି ନଈକୂଳେ
ସେ ସବୁକୁ ଝୁରିହେବା ବେଳ ।
ମୁଁ ଜପୁଛି ଶହେ ଆଠଥର ଏଠି ମନ୍ତପରି
ଭାରତର ନାମ

ଅଗଷ୍ଟ ନଅର କ୍ରାନ୍ତିର ମହାଗାନ
ଭେଦି ଯାଉଥିବ ଆକାଶ ପବନ ।

ମୁଁ ଜଳାଇ ରଖିଛି ଅନିର୍ବାଣ ଦୀପ ଶିଖାଟିଏ
ମୋ ନିଜ ଭିତରେ ।
ଜାଲିଓ୍ୱାନବାଗ୍‌ରେ ଯେମିତି ଜଳୁଛି ଅହର୍ନିଶ
ସହୀଦମାନଙ୍କର ସ୍ମୃତିଶିଖା
ସେ ଶିଖା ଭିତରୁ ଦେଶର ସୁଗନ୍ଧ ବାରିହୋଇଯାଏ ।

•

## ଭାରତ

ଭାରତକୁ ଭଲପାଏ ବୋଲି
ବାରମ୍ବାର ଫେରିଆସେ ସ୍ୱଦେଶକୁ
ବିଦେଶର ମନଭୁଲା ରୂପ
ନୂଆ ନୂଆ ଠାଣି
ମୋତେ ଆଦୌ ଭଲ ଲାଗେ ନାହିଁ ।

ଯଦିଓ ମୋ ଦେଶ ଭଲକରି
ଦୁଇ ମୁଠା ଖାଇ ପାରେ ନାହିଁ
ଯଦିଓ ମୋ ଦେଶ
ଭଲ କିଛି ପିନ୍ଧିପାରେ ନାହିଁ
ତଥାପି ସେ ବିଶ୍ୱାସ କରେ ମଣିଷକୁ
ତଥାପି ସେ ବିଶ୍ୱାସ କରେ ଈଶ୍ୱରଙ୍କୁ ।

ବିଦେଶରେ ଏତେ ଆଟୋପ ଓ ଅହଙ୍କାର
ଏତେ ଆଡ଼ମ୍ବର ହତ୍ୟା ଓ ଲୁଣ୍ଠନ
ଡଲାର ଉଡୁଛି ପବନରେ
ସବୁ ସେଠି ସମ୍ଭବ ଡଲାର ବିନିମୟରେ ।
ମୋ ଦେଶ ମୋ ପାଇଁ ମହାନ
ଏ ଦେଶର ପବିତ୍ର ପାବନୀ ଗଙ୍ଗା

ଆଉ ତ୍ରିବେଣୀରେ
ଚିତାଭସ୍ମ ଦିନେ ମୋର ବିସର୍ଜିତ ହେବ
କେତେ ଉଦ୍ଧାମ ସିଂ
କେତେ ଭଗତ ସିଂ
କେତେ ଖୁଦିରାମ
କେତେ ସୁଭାଷ
ପୁଣି ଥରେ ଜନ୍ମ ନେବେ ଏ ମାଟିରେ ।

ମୁଁ ଜାଣେ, ସେମାନେ ସଫଳ ହେବେ
ଆତଙ୍କବାଦକୁ ସାମ୍ନା କରିବାରେ ।
ତେତିଶ କୋଟି ଦେବତାମାନେ ବି
ଜାଗ୍ରତ ହେଲେଣି
ଭାରତୀୟମାନଙ୍କ ଚେତନାରେ ।

ଭାରତର ସବୁ ନଦୀ ମୋର ପ୍ରିୟ ନଦୀ
ସେ କୃଷ୍ଣା ହେଉ କିମ୍ବା କାବେରୀ
ଗଙ୍ଗା ହେଉ କିମ୍ବା ଗୋଦାବରୀ ।

ଆମର ଆଉ ଅଧିକ କ'ଣ ଲୋଡା ଯେ
ଆମେ ମୁଣ୍ଡରେ ହାତଦେଇ କାନ୍ଦିବା
ବୃଥାଟାରେ ।

ଭାରତରେ ଜନ୍ମ ବୋଲି ତ
ଆଗକୁ ଆଗକୁ ବଢ଼ାଇ ଦେଇଛି ପାଦ
ସ୍ୱପ୍ନ ଛୁଇଁଛି ଆକାଶ
ଭାରତରେ ଜନ୍ମ ବୋଲି ତ ଆମେ ମୁକ୍ତ କଣ୍ଠରେ
ଗାଇପାରୁ – 'ଆମେ ହିନ୍ଦୁ ଆମେ ମୁସଲ୍‌ମାନ
ଭାରତ ଆମର ଜନ୍ମମାଟି
କବର ଆମର ହିନ୍ଦୁସ୍ଥାନ ।'

•

## ଏଇ ପତାକା ଆମ ଆୟୁଧ

ମୋତେ ଆଜି ପତାକାଟିଏ ତିଆରି କରିବାକୁ ପଡ଼ିବ
ଯେଉଁଥିରେ ଉଜ୍ଜ୍ୱଳ ଦିଶିବ
ମୋ ଦେଶର ମାନଚିତ୍ର ।

ଏହି ପତାକା ଯେ ଆମ ଆୟୁଧ
ସବୁ ସାନ ପିଲା ବୁଝିଗଲେଣି ଆଜି ।
ମୋ ଶୈଶବରେ ବାଉଁଶ କଣିରେ ତିଆରି
ତ୍ରିରଙ୍ଗୀ ପତାକା ଧରି ବନ୍ଦେ ମାତଂରମ୍ ଧ୍ୱନିରେ
କମ୍ପାଇ ଦେଉଥିଲି ଗାଁ ଗୋହିରି, ସ୍କୁଲ ଘର, ଖେଳ ପଡ଼ିଆ ।

ଅଷ୍ଟ୍ରେଲିଆରେ କିମ୍ବା ନାଇଜେରିଆରେ
ଭାରତୀୟ ଛାତ୍ରର ଗୁଳିବିଦ୍ଧ ଖବର
କଣ୍ଟା ହୋଇ ଗଳିଯାଏ ମୋ ଧମନୀରେ ।
ଭାରତକୁ ଭଲପାଏ ବୋଲି ତ ଏତେ ସ୍ୱାଭିମାନ ମୋର
ବାରମ୍ବାର ଫେରିଆସେ ସ୍ୱଦେଶକୁ
ତୁଚ୍ଛ କରି ଯେତେ ଯେତେ ଆଟୋପ ଓ ଆଡ଼ମ୍ବର ।

ସାଇବେରିଆରେ ଝରଣା ବୁହାଇବାର ବହପ ମୁଁ କରିପାରେ
ଗୋଟିଏ ଘଟଣା ଯଥେଷ୍ଟ ଯିଏ ବଦଳାଇ ଦେଇପାରେ ଇତିହାସ ।
ଦେଶ ଥାଏ ନିଜ ଭିତରେ
ସ୍ୱାଭିମାନୀ ଦେଶ ।

ଦେଖାଏ ନାହିଁ କହେ ନାହିଁ
ନିଜ ଆଟୋପର କାହାଣୀ ଆଉ କାହା ପାଖରେ ।
ସବୁ ସାନ ପିଲାଙ୍କର ଦେଶ ତ ମୋ ଭାରତ ବର୍ଷ
ଗାଁ ଆଉ ସହରର ସବୁ ସ୍କୁଲ ପିଲାମାନେ
ଅଭିମନ୍ତ୍ରିତ ହୁଅନ୍ତୁ ଗୋଟିଏ ମନ୍ତ୍ରରେ ।

ଶ୍ରେଣୀ ପ୍ରକୋଷ୍ଠରେ, ପିଲାଙ୍କ ଜୀବନ ଖାତାରେ ଲେଖା ହେଉ
ଭାରତୀୟ ପତାକାର ଇତିହାସ ।

ନିଷ୍ପାପ ଶିଶୁଙ୍କର ଚାହାଣିରେ ବୋମା ନୁହେଁ କି ଆତଙ୍କବାଦ ବି ନୁହେଁ
ସ୍ୱପ୍ନର ଚାଦର ଢାଙ୍କି ଦେଉ ସେମାନଙ୍କ ସବୁ ଅବୟବ ।

ଆତଙ୍କିତ ସମୟ ଭିତରେ ସେମାନଙ୍କ ସବୁ ସ୍ୱପ୍ନ ସାକାର ହେଉ ଆଜି
ସବୁ ସାନ ପିଲାଙ୍କର ଦେଶ ତ ଭାରତବର୍ଷ ।
ଆଗକୁ ଆଗକୁ ଲମ୍ବିଛି ରାସ୍ତା, ଆଗକୁ ଆଗକୁ ଲମ୍ବିଛି ସ୍ୱପ୍ନ
ମୋତେ ଆଜି ପତାକାଟିଏ ତିଆରି କରିବାକୁ ପଡ଼ିବ
ଏହି ପତାକା ହେବ ଆମ ଆୟୁଧ ।

•

## ମୋ ଦେଶ

ପ୍ରମାଣ ମାଗିଲେ ଯଦି
ଦେଖାଇ ହେଉଥାଆନ୍ତା ଦେଶପ୍ରେମର
ସୁବାସିତ ଭୂଖଣ୍ଡ ।
ଛାତି ତଳେ ଅନବରତ ଜଳୁଥିବା
ଭଲ ପାଇବାର ଅଖଣ୍ଡ ଦୀପ ।

କାରିଗିଲ ହେଉ କି କାଶ୍ମୀର ହେଉ
ନିଜ ଦେଶ ପାଇଁ ପ୍ରାଣଦାନ
କରିଥିବା ସାନ ଭାଇ ।
ଆଜିଠୁ ବହୁ ବର୍ଷ ତଳେ
ଦେଶକୁ ସ୍ୱାଧୀନ କରିବା ପାଇଁ
ବାନର ସେନା ସାଜିଥିଲେ ବାପା ।

ବାନର ସେନା ସାଜି
ନିଜକୁ ଜାଳିଦେବା କଥା
ଆଜି ଇତିହାସ ଭୁଲିଗଲେ ବି
ମୁଁ ମନେ ରଖିଛି ।
ଯାହା ଯାହା ଆମେ ପାଇଛୁ ବା ହରାଇଛୁ
ସବୁକୁ ଗଣ୍ଠିଧନ କରି ରଖିଛୁ ପାଖରେ ।

ମାଆ ଆଖିରେ ଚୁନସୁରକି ଖସି ପଡୁଥିବା
ସାମ୍ରାଜ୍ୟର ଧ୍ୱଂସାବଶେଷ
ତଥାପି ସ୍ୱାଧୀନତାକୁ ବିଗ୍ରହ କରି
ପାଟକନାରେ
ଘୋଡ଼ାଇ ରଖିଛି ମାଆ ।
ସେଇ ବିଗ୍ରହକୁ ଛୁଇଁଲେ
ବାପାଙ୍କର ସ୍ୱପ୍ନକୁ ଛୁଇଁଲା ପରି ଲାଗେ ତାକୁ ।

ବୈଧବ୍ୟ ଶୋକରେ ଜରାଜୀର୍ଣ୍ଣ
ଭାଉଜର ସ୍ୱପ୍ନ ।
ଛୋଟ ପୁଅକୁ ସ୍ୱାଧୀନତାର ମାନେ
ବୁଝାଇବାକୁ ଯାଇ
ଅସହାୟତାରେ ଭାଙ୍ଗିପଡୁଥିବା ଭାଉଜ ।

ସତ୍ୟାଗ୍ରହ ବିଷୟରେ ରଚନା ଲେଖି
ପରୀକ୍ଷାରେ ପ୍ରଥମ ହୋଇଥିବା ସାନ ଝିଅ ।
ଆମରି ଘରୁ ତ ଆରମ୍ଭ ହୋଇଛି
ସତ୍ୟାଗ୍ରହ ଆନ୍ଦୋଳନ
ସ୍ୱାଧୀନତା ସଂଗ୍ରାମ, ଦେଶପ୍ରେମ ।

ଦେଖିବ ଚାଲ
କେମିତି ସୁସଜ୍ଜିତ ରହିଛି
ସୁଭାଷବୋଷ ବାଘାଯତୀନ
ଏବଂ ଉଦ୍ଧାମ ସିଂହମାନଙ୍କ ଫଟୋ
ଆଲୋକିତ କାନ୍ଥରେ ।
ଏଇମାନଙ୍କ ଜୀବନ ବେଦ ଶୁଣି ଶୁଣି
ଆମ ପିଲାମାନେ
ବଡ଼ ହେଉଛନ୍ତି ଧୀରେ ଧୀରେ ।

ଆମେ ଦେଶକୁ ଭଲପାଉ ବୋଲି ତ
ଲାଭକ୍ଷତିର ଅଙ୍କ ନ କଷି

ଆତଙ୍କବାଦକୁ ପଛରେ ପକାଇ
ମାନବିକତାକୁ ସମ୍ମାନ ଦେଉ ।

କିଏ ବିଶ୍ୱାସ କରୁ ବା ନକରୁ
ମୋ ଦେଶ ବୋଲି ଏକ ପବିତ୍ର ଭାବନା
ନିରନ୍ତର ଜଳୁଛି ଦୀପ ହୋଇ
ମୋ ହୃଦୟର ଗର୍ଭାଗାରେ ।

•

## ଶିଶୁମେଧ ଯଜ୍ଞ

ଖଡଗଦାରେ ଏତେ ଫୁଲ ଫୁଟିଛି
କି ସୁନ୍ଦର ତାର ରଙ୍ଗ ଆଉ ବାସ୍ନା
ବାସୁଛି, ମହକୁଛି ।
ପବନରେ ଦୋଳିଖେଳୁଛି
ତାର ଡାଳ ।
ତୋଳିବାକୁ ଗଲାବେଳେ
ସ୍ୱର୍ଗରେ ଲାଗୁଛି ଡାଳ
ମଞ୍ଚରେ ଲାଗୁଛି ଡାଳ ।

କେଉଁଠୁ ଆସୁଛି ଏ ସ୍ୱର
'ଫୁଲ ତୋଳିବା ମନା
ଫୁଲ ତୋଳିବା ମନା'
ଅସ୍ତ୍ରଶସ୍ତ୍ରରେ ଶୋଭିତ
ଦଳେ ନରପିଶାଚ ପରି
ଦେଖାଯାଉଥିବା
ଅତି ବୀଭତ୍ସ ଭାବରେ
ଗଛମୂଳରେ ଛିଡାହୋଇ
ବିକଟ ଚିତ୍କାରରେ କହିଲେ
କାଟି ଦିଅ କାଟି ଦିଅ ସେ ଗଛ ।

କାଟି ଟିକ୍ ଟିକ୍ ପରିଦିଅ ତା ଆସ୍ପର୍ଦ୍ଧା
ଏତେ ଟିକିଏ ଗଛ
ତାର ପୁଣି ଏତେ ଅହଙ୍କାର !
କେମିତି ହୋଇପାରନ୍ତି ମଣିଷମାନେ
ଏମିତି ନରପିଶାଚ
ସମୟ ବି ଶ୍ୱାସରୁଦ୍ଧ ହୋଇଯାଏ ବେଳେବେଳେ
ନିରୁପାୟତାରେ ।

ଗଛଟି ସାଧାରଣ ଗଛ ନଥିଲା
ସବୁକଥା ଶୁଣିଲା
ଆଘାତରେ ଲହୁଲୁହାଣ ହୋଇଗଲା
ତା ମନ ।
ସେଦିନ ଥିଲା ଶରତ ସକାଳ
ପବନ କାହିଁକି କେଜାଣି
ସ୍ଥିର ଥିଲା
ଦୁଇଦିନ ପରେ ଦୁର୍ଗାପୂଜା ।

ସମସ୍ତେ ଦେଖିଲେ
ଗଛଟି ଚାରିକାତ ମେଲାଇ
ମୂର୍ଚ୍ଛା ହେଲାପରି
ତଳେ କଚାଡ଼ି ହୋଇ ପଡ଼ିଛି ।
ନାରଙ୍ଗୀରଙ୍ଗର ଫୁଲ ସବୁ
ଦଳିମକ୍ଚି ନିଷ୍ପ୍ରାଣ ହୋଇଯାଇଛି ।

ଗଛକୁ ଚାହିଁ ଲୁହ ଛଳଛଳ ଆଖିରେ
ଛୋଟ ପିଲାଟିଏ କହୁଥିଲା
କିଏ ସବୁ କାଲି ରାତିରେ
ଆସିଥିଲେ ଗଛପାଖକୁ
କଳାକନାରେ ବନ୍ଧା ହୋଇଥିଲା
ସେମାନଙ୍କ ମୁହଁ

ପଲିଥିନ୍‌ରେ ଥିବା
ଖପୁରି ପରି ଦିଶୁଥିବା
କଣ ସବୁ ପୋତିଦେଇ ଗଲେ
ଏଇ ଗଛ ମୂଳରେ
ଗଛଟି ସେଇ ଦୁଃଖରେ ହୁଏତ
ଟଳି ପଡିଛି
ଅଧରାତିରେ ।
ଶିଶୁମେଧ ଯଜ୍ଞରୁ ବାହାରିଥିବା
ଅବଶିଷ୍ଟ ଫସିଲ ନୁହେଁ ତ ?

(ଓଡ଼ିଶାର ବିଭିନ୍ନ ସ୍ଥାନରେ କନ୍ୟାଭ୍ରୂଣ ହତ୍ୟା ଖବର ପରେ)

•

## କ୍ରାନ୍ତି ପତାକା ତଳେ

ସାବରମତିରୁ ସେଦିନ ଆସିଥିଲା ବାର୍ତ୍ତା
ଗାନ୍ଧୀ ଥିଲେ ଅନଶନରେ
କ୍ଷୀଣ ଦେହ ଭୀଷଣ ଦୁର୍ବଳ
ଗାନ୍ଧିଜୀ ପ୍ରତିଜ୍ଞାବଦ୍ଧ ଦୃଢ଼ ପରିକର
ସାରା ଭାରତର ଚାରିଆଡେ ଧ୍ୱନିତ ହୋଇ ଉଠିଲା
'ଡୁ ଅର ଡାୟ'ର ମହାମନ୍ତ୍ର
ସୁଭାଷ ବୋଷଙ୍କ ଡାକରେ ।

ବାପାଥିଲେ ବାନର ସେନାରେ
ସାମାନ୍ୟ ଗୁଣ୍ଡୁଚି ମାତ୍ର
ସୁଭାଷଙ୍କ ପଟ୍ଟଶିଷ୍ୟ ।
କେତେ କେତେ ସ୍ୱାଧୀନତା ସଂଗ୍ରାମୀ
ଗୁଳିବିଦ୍ଧ ହେଲେ
କେତେ ତାନ୍ତିଆଟୋପି, ଖୁଦିରାମ, ଉଦ୍ଧାମ ସିଂ
ଫାଶିଖୁଣ୍ଟରେ ଝୁଲିଲେ ।

ଜାଲିୱାନାବାଗରେ ଆଜି ବି ଜଳୁଛି
ଅହର୍ନିଶ ଅଖଣ୍ଡ ଉଦ୍ବେଳ
ସଂଗ୍ରାମୀମାନଙ୍କ ଆତ୍ମା
ରହିଛି ସେଠାରେ ମହାଦୀପ ହୋଇ ।

ଷାଠିଏ ବର୍ଷ ଭିତରେ କେତେ କଣ ଘଟିଗଲା
ଏଇ ଭାରତରେ ।
ଆତଙ୍କବାଦରେ ଭରିଗଲା ପୃଥିବୀ
ଟ୍ରେନ୍‌ରେ, ବିମାନ ବନ୍ଦରରେ
ଚାରିଆଡେ ବୋମାର ଆତଙ୍କ
ଆତଙ୍କବାଦର ଗପ ଶୁଣି ଶୁଣି
ବଡ଼ ହେଉଛି ଝିଅ ।

ସୁଭାଷ ସେଦିନ କ୍ରାନ୍ତି ଚାହିଁଥିଲେ
ସେଥିପାଇଁ କହୁଥିଲେ 'ଡୁ ଅର୍ ଡାଏ'
ଶ୍ରୀ ଅରବିନ୍ଦ ବି ଚାହିଁଥିଲେ କ୍ରାନ୍ତି
ସମର୍ପିତ ପ୍ରାଣରେ ଚାହିଁଥିଲେ
ଦେଶକୁ ଗଢ଼ିବା ପାଇଁ ।
ଦେଶ ଗଢ଼ା ଅଧା ରହିଗଲା
ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ
ସୁଭାଷଙ୍କ ସ୍ୱପ୍ନର ଭାରତ
ଆଜି ସତେ ଭୂଲୁଣ୍ଠିତ ହେଲା ।

•

## ଢେର୍ ଦିନରୁ ଦେଖାହୋଇନି

ଢେର୍ ଦିନରୁ ଶାନ୍ତିନିକେତନ
ସଂଗେ ଦେଖାହୋଇନି
ଖୋଆଇ କୁପାଇ କଥା
ବେଳେବେଳେ
ସ୍ୱପ୍ନରେ ଆସେ ଯାହା ।

ସପ୍ତପର୍ଣ୍ଣର ଝୁରୁଝୁରୁ ବାସ୍ନା
ମୋତେ ଅନ୍ୟମନସ୍କ କରିଦିଏ ।
ଏ ସହରରେ
କେମିତି କେଉଁଠି ବେଳେବେଳେ
ସପ୍ତପର୍ଣ୍ଣ ଫୁଟେ
ଶିଶିର ଆସିଲେ ।

ସେତେବେଳେ ଭାରି ମନେପଡେ
ଶାନ୍ତିନିକେତନ
ପ୍ରତି ସଞ୍ଜରେ
ମୋ ମନରେ ତାରା ହୋଇ ଫୁଟେ ।

କି ଉଜ୍ଜ୍ୱଳ ସେ ତାରା
ଠିକ୍ ଶୁକ୍ରତାରା ପରି
ମୋ ପାଇଁ ସେ ସମୟ ଥିଲା
ସୁବର୍ଣ୍ଣ ସମୟ ।

ଆଉ କେବେ ଆସିବକି ନା
ଜାଣେନି
ଢେର୍ ଦିନରୁ ମୁଁ ସେ ତୀର୍ଥଭୂମିକୁ ଯାଇନି ।

•

## ମୟୂରାକ୍ଷୀ ଏକ ନଦୀର ନାଆଁ

ମୟୂରାକ୍ଷୀ ଏକ ନଦୀର ନାଆଁ
ଯେଉଁ ନଈ ଦିନେ
କେତେକେତେ ପକ୍ଷୀ ପକ୍ଷିଣୀଙ୍କର
ମିଳନ କାକଳୀରେ
ମୁଖରିତ ହୋଇଯାଉଥିଲା ।

ସେଦିନ ଥିଲା ଚୈତ୍ରପୂର୍ଣ୍ଣିମା
ଶାନ୍ତିନିକେତନର ସମସ୍ତ ଅନ୍ତେବାସୀ
ବଣଭୋଜିରେ ବିଭୋର ଥିଲେ ।

ପୂର୍ଣ୍ଣିମାରେ ମୟୂରାକ୍ଷୀ
କୂଳ ଲଙ୍ଘୁଥିଲା ।

ରାତିରେ ଅପ୍‌ସରୀମାନେ ମୟୂରାକ୍ଷୀକୁ ଆସନ୍ତି
ମାଜଣା କରିବା ପାଇଁ ।
ସବୁ ଗୀତ ଶାନ୍ତିନିକେତନର ଗୀତ
ରବୀନ୍ଦ୍ର ସଙ୍ଗୀତ ।
ତରଳ ରୁପା ପାଣି ହୋଇ ବୋହିଯାଉଛି
ଚନ୍ଦ୍ରହାରରେ ସୁସଜ୍ଜିତା ମୟୂରାକ୍ଷୀ
ଅରୂପା ଅନନ୍ୟା ।

ବାଲୁଙ୍କା ପୂଜିବାକୁ ଏଠାକୁ କିଏ କଣ
ଆସିଛି କେବେ ?
ଶାନ୍ତିନିକେତନର ଗୀତ ଲେଖିବାକୁ
କେଉଁ ଅନ୍ୟମନସ୍କ କବିର ଲେଖନୀ
ଚଞ୍ଚଳ ହୋଇ ଉଠିଛି କେବେ ।

କାର୍ତ୍ତିକ କାକରରେ ଭିଜିଭିଜି
ମୟୂରାକ୍ଷୀ ସ୍ୱପ୍ନଦେଖେ
ଶାନ୍ତିନିକେତନର
ବଣଭୋଜିର ।

•

## ଆ, ଘଡ଼ିଏ ବସିପଡ଼୍ ମୋ ପାଖରେ

ଘଣ୍ଟା ସହ ଦଉଡି ଦଉଡି ଥକିଗଲୁଣି
ଆ, ବସିପଡ଼୍ ଟିକିଏ ମୋ ପାଖରେ
ଆଉଁଶି ଦେବି ତୋ ନରମ ହାତକୁ
ସମୟ ସହ ଦଉଡ଼ି ଦଉଡ଼ି
ଥୁଣ୍ଟା ହୋଇଗଲାଣି ମନ ତୋର ।

ଆଉ କ'ଣ ନରମ ହୋଇପାରିବ ସେ ମନ ?
ଭାଗ୍ୟକୁ ଦୋଷ ଦେଇ କ'ଣ ଲାଭ
ଏଇଆ ଘଟିବାର ଥିଲା
ଆହୁରି କେତେ କ'ଣ ଘଟିବ ।

ପଥର ପରି ସବୁ ସହିବାକୁ ପଡ଼ିବ
ଛୁଆ ଦିନ ନଷ୍ଟ ହୋଇଯାଇଛି
ବିଭିନ୍ନ ବିସ୍ଫୋରଣ ଭିତରେ ।
ଭୟଙ୍କର ଅସହାୟତା ଭିତରୁ
ମୁକୁଳିବାକୁ ଚେଷ୍ଟା କରିଛୁ ବହୁବାର
ଆଜି କିଛି ନ ହେଲେ ବି
ବିଶଲ୍ୟକରଣୀର ପତ୍ରଟିଏ
ଲଗାଇ ଦେବି ତୋ ଜଖମ ମନରେ ।

ଆ, ଘଡିଏ ବସିପଡ୍ ମୋ ପାଖରେ
ମୁଁ ଆଉଁଶି ଦେବି
ତୋ ଶୈଶବକୁ
ତୋ ସୁକୁମାର ମନକୁ ।

•

## କବିତାର ପକ୍ଷୀ

କେତେ ଇଚ୍ଛା ଥିଲା
ବ୍ରହ୍ମପୁତ୍ର କୂଳରେ କବିତା ପଢ଼ିବି
କବିତାରେ ନୀଳ ହୋଇଯିବ
ବ୍ରହ୍ମପୁତ୍ରର ଜଳ ।
କି ଉଦ୍ଦାମ ଏହି ବ୍ରହ୍ମପୁତ୍ର
ଆସାମ ଆକାଶରେ ଆଜି
କବିତାର ପକ୍ଷୀ ମାଳ ମାଳ ।

ଭାରତର ବିଭିନ୍ନ ପ୍ରାନ୍ତରୁ କବିମାନେ
ପକ୍ଷୀ ହୋଇ ଆସିଛନ୍ତି
ଏଠାକୁ, ଏଇ ଆସାମକୁ ।
କବିର ସ୍ୱପ୍ନ ପାଖରେ
ଆତଙ୍କବାଦୀମାନେ ବି ଅସହାୟ ।
ଏଠାକାର ଗଛମାନେ, ପକ୍ଷୀମାନେ
ଅନ୍ତରଙ୍ଗ ମିତ୍ରପଣରେ
ଅଧିକ ସବୁଜ ଆତ୍ମୀୟ ।

କାମରୂପ, କାମାକ୍ଷା ମନ୍ଦିର
ମୋ ଚେତନାରେ ସବୁ ଗୁନ୍ଥିହୋଇଯାଇଛି ଆଜି ।
ମୁଁ ନିରବଧି ସମୟର
ଜଳ ବିନ୍ଦୁଟିଏ
ବ୍ରହ୍ମପୁତ୍ର କୂଳରେ କବିତା ପଢ଼ିବା ପାଇଁ ଆସିଥିଲି
ସମୟ ବି ଦିନେ ଭୁଲିଯିବ ।

•

## ଆସ ସାଙ୍ଗ ହୋଇ ଖୋଜିବା

ଆତଙ୍କବାଦରେ ଭରପୂର ଏଇ ପୃଥିବୀ
ଟ୍ରେନରେ ବୋମା
ପ୍ଲେନରେ ବୋମା
ଘରେ ବାହାରେ
ଚାରିଆଡେ
ବୋମାର ଆତଙ୍କ ।

ଆଜି ଏଇ ଶୀତ ଥୁରୁଥୁରୁ
ସକାଳରେ
ଯେଉଁ ନବଜାତକଟି ଜନ୍ମିଲା
ସେ ଆତଙ୍କବାଦର

ଗପ ଶୁଣି ଶୁଣି ବଡ଼ ହେବ
ନା ଆନନ୍ଦର ସଙ୍ଗୀତ ଶୁଣି ଖୁସିହେବ ?

ସେ ତ ଅନେକ ଯୁଗ ତଳର କଥା
ଘରେ ବାହାରେ
ଚାରିଆଡେ
ଆତଙ୍କବାଦର ରାଜତ୍ୱ
ମୁଁ ଆନନ୍ଦ ଖୋଜୁଛି
ନିରୀହ ଆନନ୍ଦ ।

କେଉଁଠି ଯେ ଲୁଚିଯାଇଛି ସେ
ଖୋଜି ଖୋଜି ଥକିଗଲିଣି
ଆସ, ସାଙ୍ଗହୋଇ ତାକୁ ଖୋଜିବା ।

•

## କେତେବେଳେ କିଏ ଡାକିବ

ଯାଭିତରେ କେତେ କଣ ବଦଳି ଗଲାଣି
ସଂପର୍କ ଯେଉଁଠି ଥିଲା
କୁଢ଼କୁଢ଼ ଅଙ୍ଗାର ଜମା ହେଲାଣି ସେଠି ।
ସମୁଦ୍ର ଭସାଇ ନେଇ ଯାଇଛି
ଗୀତ ଗାଉଥିବା ପକ୍ଷୀଟିର
ଅଲିଅଳୀ ସାନ ଝିଅଟିକୁ ।

ତମେ ଛୁଆଦିନକୁ ଖୋଜିଖୋଜି
ହଠାତ୍ ପହଞ୍ଚିଗଲ ଗାଁ'ରେ
ନଈ ଟାଣି ନେଇଯାଇଛି
ଗାଁ'ରେ ଆକାଶ ଆଡକୁ ମୁହଁ କରିଥିବା
କଦମ୍ବ ଗଛଟିକୁ
ଆଉ ବର୍ଷରୁ
ସମ୍ବଳ ନାହିଁ ବୋଲି

ପ୍ରତୀକର ପାଠପଢ଼ା
ଅଧାରୁ ଅଟକି ଯାଇଛି ।

କେବେ କେମିତି
ଘମାଘୋଟ ଅନ୍ଧାର ଭିତରେ
ଗାଁ' ଡାକେ
ଗାଁ'ରୁ ସବୁ ଶଙ୍ଖଚିଲ, କୁମ୍ଭାଟୁଆ
ଚୁଲିଆଚୁଟି ଚଢ଼େଇମାନଙ୍କୁ
କିଏ ଡାକିନେଇ ଯାଇଛି
ଅରଣ୍ୟକୁ ଅବା ସମୁଦ୍ରକୁ ।

ଆଜି କେବଳ ଚର୍ଚ୍ଚା ଗାଁ'ରେ
ଆତଙ୍କବାଦର
ବୋମା ପଡ଼ିବାର
ପରୀକ୍ଷା ଚାଲିଛି
କେଉଁ ଉପଗ୍ରହର ।
ଏଇ ନିରୁତ୍ତାପ ସମୟ ମଝିରେ
ସମ୍ପର୍କହୀନ ସମ୍ପର୍କ ଭିତରେ
ମୁଁ ବସିରହିଛି ଖୁଣ୍ଟ ହୋଇ
କେତେବେଳେ କିଏ ଡାକିବ, ଆ ଦେଖିବା
ସମୁଦ୍ରରେ ଅନେକ ଢ଼ୁଆର ।

•

## ମାର୍ଗଶୀର ଜନ୍ମମାସ

ମାର୍ଗଶୀରର ଏକ ଶୀତୁଆ ସକାଳରେ
ମୋର ଜନ୍ମ ।
ଚାରିଆଡେ ଯେତେବେଳେ
ମାଣବସା ଗୁରୁବାର ପାଇଁ
ସଜବାଜ

ବିଲରେ ନୂଆ ଧାନର ବାସ୍ନା
ହଳଦ୍ୱୀ ପତ୍ର ପିଠାର ମହକରେ
ମାଟିଘର ମହକୁଛି
ଠିକ୍ ସେତିକିବେଳେ
ଶୀତୁଆ ସକାଳରେ ମୋର ଜନ୍ମ ।

ବାଲ୍ୟବିଧବା ପିଇସୀ
ଖୁସିରେ ଧାଇଁ ଆସିଲା
ଜେଜେବାପାଙ୍କ ପାଖକୁ ଖବର ଦେବା ପାଇଁ
ଲକ୍ଷ୍ମୀ ଆସିଛି ଘରକୁ ଦେଖିବ ଆସ ।

ଏଥର ମାର୍ଗଶୀରରେ
ମହଣ ମହଣ ନୂଆ ଧାନ ଅମାରରେ
ଧାନବିଲ ଭର୍ତ୍ତି ଧାନବିଡ଼ାରେ ।
ବଡ଼ମା’ ଆର୍ଶୀବାଦ କଲା
ମାଆକୁ
ସାନ ଯାଆ ତ ଝିଅପରି ତାର
ଦୀର୍ଘ ଏତେ ବର୍ଷ ପରେ ମଧ୍ୟ
ସେଦିନର ଏଇ ଗୋଟିଏ କଥା ବାରମ୍ବାର କହେ
ଆଉ ଖୁସି ହୁଏ
ଆଖି ଛଳଛଳ ହୋଇଯାଏ ଆନନ୍ଦରେ ।

କେମିତି ନିଃସନ୍ତାନ
ପରିବାର ଖୁସିରେ
ବିହ୍ୱଳ ହୋଇଯାଇଥିଲା ସେଦିନ ।
ଝିଅମାନେ ଲକ୍ଷ୍ମୀସ୍ୱରୂପିଣୀ
ଝିଅମାନେ ଅମୃତା
ଆଜି ଏଇ ନଭେମ୍ବର ସତେଇଶର ଶୀତାର୍ତ୍ତ ସନ୍ଧ୍ୟାରେ
ଆତ୍ମମଗ୍ନ ସ୍ୱପ୍ନ ଓ ସ୍ମୃତିରେ ।

ମୁଁ ବହୁଦିନରୁ ଛାଡି ଆସିଛି ମୋର ପିଲାଦିନ
ହଳଦୀପତ୍ରର ବାସ୍ନା

ପୋଡ଼ପିଠା
ସୁବର୍ଣ୍ଣରେଖାର ସ୍ମୃତି
ସ୍ୱପ୍ନମୟ ବେଳ
ନଭେମ୍ବର ଜନ୍ମ ମାସ ।

ମାଣବସା ମାର୍ଗଶୀର ଗୁରୁବାର
ଗାଁ' ଆକାଶରେ
ଉଡୁଥିବା ଦଳ ଦଳ ଶଙ୍ଖଚିଲ
ଆଜି ଭାରି ଭଲଲାଗେ ଭାବିବାକୁ
ସେଦିନର ସ୍ୱପ୍ନ ଆଉ ସଂପର୍କର ମଧୁଝରା ଦିନ
ମାର୍ଗଶୀର ଜନ୍ମମାସ
ପିଲାଦିନ ଲୁଚକାଳି ଖେଳ ।

•

## କବିର ଗାଁ'ରେ

ଚିଲିକା ଭିତରେ ଏକ ଦ୍ୱୀପ
ଚାରିପାଖେ ଚିଲିକା ଓ ତାପରେ ସମୁଦ୍ର
ମାଲୁଦ ହେଉ ଅବା ନନ୍ଦଳା
ସେଇ ଗାଁ' ଏକ କବିର ଗାଁ ।

ସାଧବ ଝିଅର ଶୋକ
ଥରାଇ ଦେଇଥିବ ବନଭୂମି
ନନ୍ଦଳାର ଶ୍ୟାମଳ ହୃଦୟ
ସେ ଗାଁ'ରେ ଲେଖାହେଲା
କମଳାୟନ, ହେମପୁଷ୍ପ, ହେମଶସ୍ୟ
ବିଜନ ବେଳାରେ
ଅସଂଖ୍ୟ ବୋଇତ ଆସି
ଫେରି ଯାଇଥିବ ।

ସେ ଗାଁ'ର ସୂର୍ଯ୍ୟାସ୍ତର ରଙ୍ଗ
ଗେରୁଆ ବା ମେହେନ୍ଦୀ ବର୍ଣ୍ଣର
ସେ ଗାଁ' ଝିଅର ହସ
ଶୁଭ୍ର ନା ନିଷ୍ପ୍ରଭ ?

ଗାଁ'ଟିଏ ଭାରି ସୁକୁମାର
ଅସଂଖ୍ୟ କିଆ କେତକୀ
କଇଁଫୁଲ, ଗୟସର ସମାହାର
ମୁଁ ଆଜି କବିର ଗାଁ'ରେ ।
ଏପାଖେ ଚିଲିକାର ଛଳଛଳ ପାଣି
ସେପାଖେ ସମୁଦ୍ରର
ଲୁଣି ହାୱା ଶୀତୁଆ ସଞ୍ଚର ।

ଦରଫୁଟା କଇଁଫୁଲ ଆଖି ଖୋଲି
ଚାହୁଁଛି କେବଳ
ଦୁଇ ପାଖେ ପାଚିଲା ଧାନର ବାସ୍ନା
କରୁଛି ବିହ୍ୱଳ
କବିର ଗାଁ'ରେ ଶୀତ ଆଜି
କୁତୁକୁତୁ କରେ ଛୋଟ ପିଲାପରି
ଚିଲିକା ଓ ସମୁଦ୍ରର ଯୁଗଳବନ୍ଦିରେ
ବନ୍ଧା ଆଜି ଅସରନ୍ତି ସମୟ ଆମର ।

•

## ଚାଲଯିବା ହରିଦ୍ୱାର

କେତେଥର ଭାବିଛି
ଏଇଥର ଯିବା ସାଙ୍ଗ ହୋଇ
ଋଷିକେଶ ହରିଦ୍ୱାର
ଢେର୍ ଦିନୁ ତମେ କୁଆଡେ ଯାଇନ ।

ଘରର ଚାରିଆଡେ
ଖାଲି ଅରମା ଅସନା ଆଉ ଅସଜଡା
କିଛି ଭଲ ଲାଗୁନି ଆଜିକାଲି
ଚାଲ ଏଥର ଚାଲିଯିବା
କାଶୀ କିମ୍ବା ହରିଦ୍ୱାର
କେତେ କଷ୍ଟରେ
ଘର ଖଣ୍ଡେ କରିଥିଲେ
ଅଖିଆ ଅପିଆ ରହି
ଘରଟିଏ ଅଛି ବୋଲି ତ
ମୁଣ୍ଡଗୁଞ୍ଜିଲେ ଅସମୟରେ
ନ ହେଲେ ଫେରିଥାଆନ୍ତେ ଗାଁ'କୁ ।

ଇଜମାଲି ଜାଗାରେ
ଫଳାଇ ଥାଆନ୍ତେ କାକୁଡି, ଜହ୍ନି
କେଉଁ ଘର ଅବା କାହାର
ଖାଲି ମୋହ ଆଉ ମାୟାରେ ସିନା
ଅଣ୍ଡାଳି ହେଉଛେ ସାରାଟା ଜୀବନ ।

ଯିବ ଯିବ କହି କେବେ ବି ଯାଅନି
ଏକୁଟିଆ ଯିବାକୁ ହୁଏ ମୋତେ
ଦେଖ, ଏଇଥର କିଛି ବି ଶୁଣିବିନି
ସାଙ୍ଗ ହୋଇ ଯିବା ହରିଦ୍ୱାର ।

•

## ଆଜି ଏତେ ବର୍ଷ ପରେ

ଏଥର ଜନ୍ମଦିନ ଆସିଲେ
ଗାଁକୁ ଯିବା
ହଳଦୀ ବଣରେ
ହସକୁରୀ ହଳଦୀ ଫୁଲ ସହ
ଚୁପ୍‌ଚାପ୍ କଥାବାର୍ତ୍ତା ହେବା ।

ସେଦିନ କହୁଥିଲ
ଶଙ୍ଖଚିଲ ଢେର୍ ଦିନରୁ ଦେଖିନ
ଜନ୍ମ ଦିନରେ
ଗାଁ ଆକାଶରେ ଶଙ୍ଖଚିଲ ଦେଖି
ବିଭୋର ହୋଇଯିବ ।
ମାମା ଗଲାପରେ
ଆମ ବାରିରେ
ସପୁରି କି ସୀତାଫଳ
କିଛି ବି ଫଳୁନି
ଆମ୍ବ ପଣସ କି ପିଜୁଳି
ମୂଳରେ ମାମା ଛିଡ଼ାହେଲେ
ଗଛମାନେ ଖୁସିରେ
ଡାଳ ନୁଆଁଇ ଦେଉଥିଲେ
ମଣିଷମାନଙ୍କ ଅପେକ୍ଷା
ଗଛମାନେ ଅଧିକ ଆତ୍ମୀୟ ବୋଲି
ଏଥର ଆସିଲେ ଜାଣି ପାରିବ ।

ସବୁଗଛ ଥିଲା ମାମାର ପ୍ରିୟ
ସମସ୍ତଙ୍କୁ ସେ ଜନ୍ମ ଦେଇଛି
ମାମା ଆସିଲେ ଖୁସିରେ ଗଛମାନେ
ବଉଳି ଉଠନ୍ତି
ସେଥର କହିଲି
ଚାଲ୍ ଏଥର ଋଷିକେଶ ନେଇଯିବି
ଖୁସି ହେଲା ମାମା
କହିଲା, ଗଛମାନଙ୍କୁ ଛାଡ଼ି
କୁଆଡେ ଯିବିରେ ।

ମୋତେ ନ ଦେଖିଲେ
ଦୁଃଖରେ ଝାଉଁଳି ଯିବେ ଗଛମାନେ

ଆଜି ଏତେ ବର୍ଷ ପରେ
ଗଛମାନେ ନିଷ୍ପ୍ରାଣ
ହୋଇଯାଇଛନ୍ତି
ସବୁ ଦେଖିବ ଗଲେ ।

•

## ସମୟ ସରିବାର ସ୍ୱର

ଶୁଣ ସମୟ ସରିଆସିବାର ସ୍ୱର
ମାଆକୁ ଲେଖିବାକୁ ଅଛି ଚିଠି
ଆଖି ଔଷଧ ମିଳୁନି ବୋଲି ଏଠି
ଆଣିବାକୁ ପଡ଼ିବ ବିଦେଶରୁ ।

ପୁଅକୁ କହିବି
ଆହୁରି ସ୍ୱପ୍ନଦେଖି
ବିଦେଶ ଯାଇ
ସୁନାଖଣି ସନ୍ଧାନ କରିବାର ।

ଯାହା ହେବାର ଥିଲା ହେଲା
ଏଥର ଶୁଣ
ଜୀବନର କୋମଳଗାନ୍ଧାର ସ୍ୱର ।
ସମୟ ସରିଆସିବାର ଶବ୍ଦ
ମୋତେ ଶୁଭୁଛି ବାରବାର ।

ଭାରି ମନେପଡୁଛି ଆଜି
ପିଲାଦିନ ତରାଟ ମୂଳରେ
ସଙ୍ଗାତ ବସିବାର ବେଳ ।

କେତେ କଣ ଦେଲି ଆଉ ନେଲି
ବେଳ ନାହିଁ ଏତେ ଭାବିବାର ।
ମୋ ଚାରିପାଖରେ ଆଜି
ସମୟ ସରିଆସିବାର ସ୍ୱର ।

•

# ଅନ୍ତରଙ୍ଗ ପଡ଼ୋଶୀ

ଏଠି ଗଛମାନେ ଫୁଲମାନେ
ମୋତେ ଘେରି ବସିଛନ୍ତି
ଅନ୍ତରଙ୍ଗ ପଡୋଶୀ ପରି
ମୋ ଘରିପାଖରେ ।
ମୋର କଣ ଆଉ ଚିନ୍ତା ଯେ
ମୁଁ ବିନିଦ୍ର ରହିବି ସାରାଜୀବନ
କେଉଁ ଦୁଃଖରେ ।

ମୁଁ କାହିଁକି ମଉନ ହୋଇ ବସିବି ମନମାରି
ସକାଳ ପହରୁ
ପକ୍ଷୀଟିଏ ପରି ।
ମୁଁ କାହିଁକି ହସିବିନି
ଗଛଙ୍କୁ ଦେଖି
ଫୁଲଙ୍କୁ ଦେଖି
ନିରୀହ ଆନନ୍ଦରେ ।

ମୋ ପଡୋଶୀମାନେ
ଭାରି ଭଲ ଲାଗନ୍ତି ସେତେବେଳେ
ଯେତେବେଳେ ଟିକିଟିକି ଚଢ଼େଇ ଆସି
ଗପ କରନ୍ତି ସେମାନଙ୍କ ସାଙ୍ଗରେ
ଆଉ କେତେବେଳେ
ବିଦେଶିନୀ ସୁନ୍ଦର ଚଢ଼େଇମାନେ ଆସନ୍ତି
ବିନା ନିମନ୍ତ୍ରଣରେ
ଗୀତ ଗାଇବା ଆରମ୍ଭ କରିଦିଅନ୍ତି ।
ମୋର ସେତେବେଳେ
ଭାରି ମନ ହୁଏ ସିତାର ବଜାଇବାକୁ
ସିତାରରେ ରାଗ ମାଲ୍‌କୋଶ୍ ବାଜିଲେ
ସେମାନେ ସତରେ ବିହ୍ୱଳ ହୋଇ ଉଠନ୍ତି ।

ରାଗ ମାଲ୍‌କୋଶ୍
ରାଗ ବିହାଗ
ରାଗ ଆଶାବରୀ
ସବୁ ସେମାନଙ୍କର ପ୍ରିୟ ରାଗ ।

ସେଦିନ ମୋ ପ୍ରିୟ ପଡ଼ୋଶିନୀ
କଞ୍ଚନ ଗଛଟି ଫୁଲର ଗହଣା ପିନ୍ଧି
ମୋତେ ଦେଖି ସାମାନ୍ୟ ଟିକିଏ ହସିଦେଲା
ଯେମିତି ମୋ ଝିଅ ନୂଆ ଶାଢ଼ି ପିନ୍ଧିଲେ
ଖୁସିରେ ଆସି ମୋତେ ଦେଖାଏ ।

'କେମିତି ହୋଇଛି ମାଆ ମୋ ଶାଢ଼ି'
ପଡୋଶୀ କଞ୍ଚନ ଗଛଟି
ସତରେ ମୋ ଝିଅପରି ଲାଗିଲା ସେଦିନ ।
କାମିନୀ ମୋର ଅନ୍ୟ ଏକ ପଡ଼ୋଶିନୀର ନାଁ
ଭାରି ସୁକୁମାରୀ, ଶ୍ୟାମାଙ୍ଗିନୀ
ହେମନ୍ତରେ ସେ ଅନନ୍ୟା ।

ଶୁଭ୍ର ଫୁଲମାନଙ୍କୁ
କୋଳରେ ରଖି
ସଙ୍ଗାତ ବସିପାରେ
ବଉଳ କିମ୍ବା କଦମ୍ବ ସହିତ ।
ଚଂପକ ବରଣୀ ଚଂପା
ମିତଣୀ ମିତଣୀ ଲାଗେ ।

ସସ୍ମିତା ସେ ହସରେ, କଥାରେ,
ଗପରେ ଆପଣାର କରିପାରେ ସମସ୍ତଙ୍କୁ
ମନଲୋଭା ମହକରେ
ମୋ ଘରର ପ୍ରତିଟି ଅଗଣା
ବାସ୍ନାମୟ ହୋଇଯାଏ ତା' ପାଇଁ ।

ବସନ୍ତ ଆସିଲେ
ବଉଳ ତା ଉଦ୍ଦାମ ଠାଣିରେ
ନିଜକୁ ଅଜାଡି ଦିଏ
ପ୍ରତି ସଞ୍ଜବେଳେ ।
ନିଜକୁ ନିଃଶେଷ କରି
କିଏ ଅବା ତାପରି
ହୋଇପାରେ ।

ମାଳତୀ ମୋ ମଧୁମୟୀ ପଡୋଶିନୀ
ବାସନ୍ତୀ ସଞ୍ଜରେ ଫୁଟି
ଫଗୁଣର ମଧୁଝରା ସକାଳରେ
ଶୋଇପଡେ କାହିଁକି ଜାଣେନି ।
ଏମାନେ ସମସ୍ତେ ମୋର ପଡୋଶିନୀ
ସମସ୍ତେ ମୋ ପ୍ରିୟ ସହଚରୀ
ସମସ୍ତେ ମୋ ସୁଖ ଆଉ
ଦୁଃଖର ସଙ୍ଗିନୀ ।

କେତେବେଳେ କେମିତି
ମନଉଣା କରି ବସିଥିଲେ
ପାଖକୁ ଆସନ୍ତି ଏମାନେ ଜଣେ ଜଣେ
ମୋ ଦୁଃଖିନୀ ମନଟାକୁ
ଛୁଇଁ ଦିଅନ୍ତି ଅତି ଆପଣାର ପରି
ଆଦରରେ ।

ମୋ ଘର ଆରପାଖରେ
ପ୍ରହରୀ ସଦୃଶ ରାତିଦିନ
ବିନିଦ୍ର ରହି ବସିଛନ୍ତି
ବଳିଷ୍ଠ ପଡ଼ୋଶୀ
ବେଲ, ପଣସ, ନଡ଼ିଆ
ଏଇ ତିନିଜଣ ।

ମୁଁ ଜାଣେ କେତେବେଳେ କେମିତି
ଅସୁବିଧା ହେଲେ
ଏମାନେ ନିଶ୍ଚୟ ମୋ ଡାକ ଶୁଣି
ପାଖକୁ ଆସିବେ ।

ସାହାଯ୍ୟ ଓ ସହାନୁଭୂତିର ହାତ
ଆପେ ଆପେ
ମୋ ଆଡକୁ ଲମ୍ୱାଇ ଦେବେ
ଦୁଃଖ କ'ଣ, ଏଭଳି ପଡ଼ୋଶୀ
ଥାଉ ଥାଉ ।

ଆତ୍ମୀୟମାନଙ୍କ ଠାରୁ
ଅଧିକ ଆତ୍ମୀୟ
ଅନ୍ତରଙ୍ଗ ପଣରେ
ଅଧିକ ଏକାନ୍ତ ।

ହିଂସ୍ର ମଣିଷ ଅପେକ୍ଷା
ଏମାନେ ତ ଅଧିକ ଆତ୍ମୀୟ
ପରଶ୍ରୀକାତରତାରେ
ହୃଦୟ ଯାହାର ଭରପୂର
ଈର୍ଷାରେ, ହିଂସ୍ରତାରେ
ଯେଉଁ ମଣିଷମାନେ
ଅଧିକ ବିପଦସଙ୍କୁଳ ।

ସେମାନେ ମୋ ପଡୋଶୀ ହେବା
ଅପେକ୍ଷା ଗଛମାନେ
ଫୁଲମାନେ ଅଧିକ
ଆତ୍ମୀୟ
ମଣିଷ ଅପେକ୍ଷା ।

•

# ମାଆର ବଡ଼ କଷ୍ଟ ଏବେ

ଅଦିନ ବର୍ଷାରେ
ଅଗଣାରେ ଶୁଖୁଥିବା
ମାଆର ଶାଢ଼ିଟା ଭିଜିଗଲା
ମାଆ ଶୋଇଛି
ଆଖିକୁ କିଛି ବି ଦିଶୁନି
ମିଛରେ କହୁଛି
ସବୁ ଦେଖି ପାରୁଛି ବୋଲି
ମୁଁ ଜାଣେ
ମାଆର ଆଜିକାଲି ବଡ଼ କଷ୍ଟ ।

କେହି ବି ତାକୁ ଫୋନ୍ କରନ୍ତିନି
ଏମିତିକି ଯେଉଁମାନଙ୍କୁ ସିଏ
ବଢେଇ କୁଢେଇ ମଣିଷ କରିଥିଲା
ସେମାନେ ଆଜି ସାତପର
ମାଆ କିଛି ଶୁଣି ପାରୁନି
ବୟସ ନବେ ପାଖାପାଖି ।

ସକାଳ ହେଲେ
ମାଆ ପଚାରେ
କାଲି ରାତିରେ ଫୋନ୍‌ରେ
"ମୋ କଥା କିଏ ପଚାରୁଥିଲା କି ?"
କିଏ ଆଉ ପଚାରନ୍ତା ତା କଥା
ସିଏ ଆଜି ଅଲୋଡା ଶୁଖିଲା କାଠଖଣ୍ଡିଏ
ସମସ୍ତଙ୍କ ପାଇଁ
ବୟସ ହେଲେ ସମସ୍ତେ
ଏମିତି ଅଲୋଡା ହୋଇଯାଆନ୍ତି
ବୋଧହୁଏ ।

ଆମେ ତ ଏବେଠାରୁ ଅଲୋଡା
ହୋଇଗଲୁଣି ସଂସାର ପାଖରେ
ଅଲୋଡା ନୁହେ ତ ଆଉ କଣ ?
ଆଉ ଦରକାର ନାହିଁ ଆମ ପାଖରେ କାହାରି
ତୁମେ ତ ସକାଳ ପହରୁ ବସିଛ ଯେ ବସିଛ
ସୂର୍ଯ୍ୟାସ୍ତ ହେବାକୁ ଆହୁରି ଡେରି
ବଡ଼ ବାଧୁଛି ଏ ଜୀବନ
ଦିନ ସରି ଆସୁଛି ତ
କଣ ଅଛି ଆଉ ଜୀବନରେ
ଘର ତୋଳା, ଜମିକିଣା ତ
କେବେଠୁଁ ସରିଗଲାଣି ।

କେତେବେଳେ କିଏ ଆଗ
ଚାଲିଯିବ କିଏ ଜାଣେ
ମାଆ ବସିଛି ସେମିତି ଚୁପ୍‌ଚାପ୍ ।

•

## ସମୟ ଅଟକିଯାଉ

ପରୀ ଶୀଘ୍ର ବଡ଼ ହୋଇଯା
ତୁ ବଡ଼ ହେଲେ ସ୍କୁଲଘରେ
ବନ୍ଦୀ ହୋଇଯିବୁ ।
ଆକାଶ ଦେଖିବାକୁ
ଯଦି ଚାହିଁବୁ ଦଣ୍ଡିତ ହେବୁ ।

ବର୍ଷା ଆଡ଼କୁ ଯଦି ମନ ଦେବୁ
ଶ୍ରେଣୀରୁ ତୋତେ ବାହାର କରିଦେବେ
ତୋ ଶିକ୍ଷକ ।
କବିତାମନସ୍କ ହେବୁ ନାହିଁ ବଡ଼ ହେଲେ
ବିନ୍ଦୁବିନ୍ଦୁ ଲୁହ ଝରିବ

ଲୁହ ନୁହେଁ
ଲହୁ ଝରିବ ହୃଦୟରୁ ।

ତୁ ଏମିତି ଲୁଚକାଳି ଖେଳରେ
ଭୁଲାଇ ଦେ ମୋତେ
ମୋ ପିଲାଦିନକୁ ଆଉଥରେ
ଆଉଁଶିବାକୁ ମନ ହେଉଛି
ତୋ ପାଖରେ ।

ତୁ ବଡ଼ ହଅନା ପରୀ
ସମୟ ଏମିତି ଅଟକିଯାଉ ତୋ ପାଖରେ
କେତେ ସୁକୁମାର ନିଷ୍ପାପ ତୋ ହସ
ଫୁଲଠୁ ବି କୋମଳ ।

ମୁଁ ଆଜି ଅନ୍ୟମନସ୍କ ହୋଇଯାଉଛି
ତୋ ଲୁଚକାଳି ଖେଳରେ
ତୁ ତ ଆମ କୁନିଝିଅ
ସୁକୁମାର ପରୀଟିଏ
ସମୟ ଅଟକିଯାଉ
ତୋରି ପାଖରେ ।

•

## ଯେଉଁଠି ଥାଆ, ତୁ ଭଲରେ ଥାଆ

ତୁ ଯେଉଁଠି ଥିଲେ ବି
ସେଟା ମନ୍ଦିର ହୋଇଯାଏ
କାହିଁକି ମାଆ ।

ମନ୍ଦିରରେ ପଥର ମୂର୍ତ୍ତି ପ୍ରତିଷ୍ଠା କରାଯାଇ
ପୂଜା କରାଯାଏ
ଦେବୀମାନେ ମଣିଷର ଆକୁଳ ପ୍ରାର୍ଥନା

ଶୁଣନ୍ତି କି ନା ଜାଣେନି
ଦେବୀମାନେ ଆମର ମଙ୍ଗଳ କରନ୍ତୁ
ଏଇ ବିଶ୍ୱାସରେ ଆମେ
ଅସରନ୍ତି ରାସ୍ତା ପାର୍ ହୋଇଯାଉ ।

ଖାଲ ଢ଼ିପ କିଛି ବି ଜଣାପଡେନି
ତୁ ତ ଦେବୀର ପ୍ରତିଭୂ ।
ତୋତେ କିଛି ମାଗିବା ପୂର୍ବରୁ
ସବୁ ଜାଣିପାରୁ
ଜାଣିପାରି ତଥାସ୍ତୁ କରିଦେଉ ।

କ୍ଷମାର ବାରିଧି ଭିତରେ ତୋର ଆତଜାତ
ତୁ ପ୍ରତିଷ୍ଠିତା ଦେବୀ ।
ଭଲ ପାଇବାର ଦୁର୍ଲଭ ଅନୁଭବ ଭିତରେ
ତୋର ଦେବୀ ସତ୍ତା
ପ୍ରତିନିୟତ ଜାଗ୍ରତ
କାହାରି ଅବିଗୁଣ
ତୋ ଆଖିରେ ପଡେନି କେମିତି ମାଆ ।

ଭଲ ପାଇବାର ଭଣ୍ଡାର ଘର
ତୋର ସବୁବେଳେ ପରିପୂର୍ଣ୍ଣ
ଯେତେ ଯାହାକୁ ଦେଲେ ବି
ସରୁ ନ ଥାଏ ଆଦୌ ।
ତୁ ସନ୍ତୁଷ୍ଟ ହେଲେ
ଈଶ୍ୱର ଆପେ ଆପେ
ସନ୍ତୁଷ୍ଟ ହୋଇଯାଆନ୍ତି ।
ଆଶୀର୍ବାଦର ବିଭୂତି
ସବୁଠାରେ ମହକି ଯାଏ ।

ତୋତେ ମୁଁ କେବେ କିଛି ଦେଇନି ଜୀବନରେ
ପିଲାଦିନେ ତୁ ନଥିଲେ
ମୁଁ କେମିତି ବଡ଼ ହୋଇଥାଆନ୍ତି ମାଆ

ଆଜି ତୁ ବୁଢ଼ୀ ହୋଇଗଲୁ ବୋଲି
ତୋତେ ମୁଁ ଜରାନିବାସରେ
କେମିତି ରଖିବି ।

ମୋ ଭିତରେ ତୁ ଯେଉଁ
ଭଲ ପାଇବାର ପୃଥିବୀ ତିଆରିଛୁ
ପ୍ରତ୍ୟୟର ପାରାବାର ନିର୍ମାଣ କରିଛୁ
ଏ ଜନ୍ମରେ କେବେବି
ଶୁଝିବନି ମାଆ ।
ତୁ କେମିତି ଅଛୁ ମାଆ
ଯେଉଁଠି ଥାଆ ତୁ
ଭଲରେ ଥାଆ ।

•

## ଆହୁରି ସୁନ୍ଦର ଲାଗିବ ପୃଥିବୀ

ତୁ କାନ୍ଦିଲେ
ଫୁଲ ସବୁ ବୁଜି ହୋଇଯିବେ ଦୁଃଖରେ
ତୋ' ପ୍ରିୟ ଗଛମାନଙ୍କରୁ
ପତ୍ର ଝଡ଼ିପଡ଼ିବ
ଅକାଳରେ ।
ଥୁଣ୍ଟା ହୋଇଯିବ ଜୀବନ
ତୁ କାନ୍ଦନା
ସୁନାନାକୀ ଝିଅ ତୁ କାନ୍ଦନା ।

ମୋତେ ଦେଖ୍
ସୂର୍ଯ୍ୟ ଆଡକୁ ମୁହଁ କରି ମୁଁ କେମିତି ଚାଲିଛି
ଏକଲୟରେ
ପଛରେ ଯିଏ ଯେତେ ବିଦ୍ରୂପ କଲେ ବି
ମୁଁ ସେଆଡକୁ

ଅନାଇବି ନାହିଁ ବୋଲି
ପ୍ରତିଜ୍ଞା କରିଛି ।

ତମ ଦୁହିଁଙ୍କ ଭଲ ପାଇଁ
ମୁଁ କାନି ପାତି ରଖିଛି
ଈଶ୍ୱରଙ୍କ ପାଖରେ
ଅନବରତ ।

ତୁ ଖୁସି ହେବୁ ବୋଲି
କାହାକୁ ନ କହି
ଭଲ ପାଇବାର ସୂକ୍ଷ୍ମସୂତାରେ
ତୋ ପିଲାଦିନ କଣ୍ଢେଇ ପାଇଁ
ସ୍ୱେଟର ବୁଣୁଛି ।

ଜୀବନକୁ ଭଲପାଆ ଝିଅ
ଜୀବନ ପ୍ରତି କରୁଣା ନୁହେଁ
ଭଲ ପାଇବାର ବନ୍ୟାରେ
ଭିଜାଇ ଦେ
ଆହୁରି ସୁନ୍ଦର ଲାଗିବ ପୃଥିବୀ ।

•

## ନିର୍ବାସିତ ଦ୍ୱୀପରେ

ନିର୍ବାସିତ ଜୀବନ କେମିତି ଲାଗେ
ଚାରିପଟେ ସମୁଦ୍ରର ଘୋ ଘୋ ଶବ୍ଦ
ମଝିରେ ବିରାଟ ଟାପୁ
ସେହି ଟାପୁ କିମ୍ବା ଦ୍ୱୀପ ଭିତରେ
ଏକୁଟିଆ ମଣିଷଟିଏ ମୁଁ ।
ଏପରି ନିକାଞ୍ଚନ ଦ୍ୱୀପକୁ
କିଏ କାହିଁକି ଆସିବ
କୁଶଳ ମଙ୍ଗଳ ପଚାରିବା ପାଇଁ ।

ମୁଁ ନିଦକରେ ଶୋଇ ପାରିନି
କେତେ ଆଲୋକ ବର୍ଷ ହେବ
ମୁଁ ମଣିଷମାନଙ୍କ କଥା କିଛି ଶୁଣିନି
କେତେ ମନ୍ୱନ୍ତର ହେବ ।
ଦ୍ୱୀପରେ କେହି ଜଣେ ବି ନାହାନ୍ତି
ଖାଲି ସମୁଦ୍ରର ସ୍ୱର ଛଡ଼ା
କିଛି ନାହିଁ ଏଠି ।

•

## ସୁଧା

ଜୟପୁରରେ ତମ ଘର, ଆଖିରେ ଆଖିଏ ବନସ୍ଥଳୀର ସ୍ୱପ୍ନ
ସେ ଘରେ କେତେ ଟେରାକୋଟାର କାରୁକାର୍ଯ୍ୟ
ଲବଙ୍ଗ ଅଳେଇଚ ଦ୍ୱୀପର ସୁବାସ ।

ବେଲୁର ମଠର ଉପାସନା ଆରତି ଭିତରେ
ତମେ କଣ ସତରେ
ଖୋଜୁଥିଲ ନିଜକୁ ?
ଗଙ୍ଗା ନଈ ତୁମକୁ ସତୃଷ୍ଣ
ଅପଲକ ଆଖିରେ ଅନେଇଥିଲା
ଊର୍ଦ୍ଧ୍ୱାୟିତ ଚେତନା ଭିତରେ
ତମେ ସେଦିନ ହଜି ଯାଇଥିଲ ।
ଅମୃତମୟ ଭାବନା
ସବୁ ତମ ଭିତରେ
ଭିଡ ଜମାଇ ଦେଉଥିଲେ
ଗଙ୍ଗାର ପବିତ୍ର ପାଣିରେ
ତମ ଆବେଗାୟିତ ସ୍ୱପ୍ନ
ଚହଲି ଉଠିଥିଲା ।

ଜୟପୁର ଫେରିଯାଇଥିବ ସୁଧା
ସ୍ୱପ୍ନର ଟେରାକୋଟା ଭିତରେ
ତମେ ହଜି ଯାଇଥିବ ।

ମୁଁ ଆଜି ଫେରୁଛି ଓଡ଼ିଶା
ବିମାନରେ ନୁହେଁ
ଟ୍ରେନ୍‌ରେ ।

•

## ପିଲାଦିନ ଗାଁ'ରେ

ଆଜି ତୋ ପିଲାଦିନ ଗାଁ'ରେ ବସି
ଏଇ ବର୍ଷା ଋତୁରେ
କଣ ଭାବୁଛୁ ଏତେ ।

ତୋ ଦୁଃଖ ବାଣ୍ଟିବାକୁ
କାହାକୁ ପାଇଲୁନି ବୋଲି
ଗାଁ'କୁ ଚାଲିଗଲୁ
ଶୋକରେ ନା ଅଭିମାନରେ ।

ପୁଅମାନେ ତ ନିଜ ନିଜ ବାଟରେ
କାହାକୁ କହିଥାନ୍ତୁ ଦୁଃଖକଥା
ଦିନ ସରିଗଲା ବେଳେ
ତୁ ଏତେ ଅସହାୟ
କେମିତି ହୋଇଗଲୁ ମା
ତୋ ପିଲାଦିନ ଆମ୍ବଗଛ
ପଣସ, ନଡ଼ିଆ, ତାଳ
ସମସ୍ତେ ତୋ ସହିତ
ଗପରେ ବିଭୋର ଥିବେ ।

ସେମାନଙ୍କ ଅତିଥି ତୁ
ଗାଁ' ଝିଅ କ୍ଷେତ୍ରମଣି ।
ସେଇସବୁ ଗଛ
ସେମିତି ରହିଛି

ଯାହାତଳେ
କଉଡି ଖେଳରେ
ସାଙ୍ଗ ମେଳରେ
ପିଲାଦିନ କଟିଛି ତୋର ।

କେବେ ଫେରିବୁ ତୋର ଯାତନା ନଗ୍ରକୁ
କେବେ ଫେରିବୁ ତୋର ଅକୃତଜ୍ଞ ସଂସାର ପାଖକୁ ।
ମୁଁ ଜାଣିଛି
ତୁ କେତେ ଅସହାୟ
ସମୟ ପାଖରେ ।
କେତେ ନିରୁପାୟ
ଜୀବନର ଛକାପଞ୍ଝା
ଉଠାଣି ଗଡାଣି ବାଟରେ ।

ଶାଗ ଖରଡା ବାସ୍ନାରେ ବିଭୋର ହେବାକୁ
ତୁ ରହିଥା ତୋ ପିଲାଦିନ ଗାଁ'ରେ ।
ବହୁଦିନ ଭୁଲିଯାଇଥିବା
ପଖାଳ କଂସାର ଜୀବନ ଭିତରେ
ନିଜକୁ ଖୋଜି ଲାଗିଥା ।

•

## ସିବାଲିକ୍‌ରେ ସିମଲା

ଟ୍ରୟ ଟ୍ରେନ୍‌ଟିର ନାଁ ଶିବାଲିକ୍
ଭାରି ସୁନ୍ଦର ।
ଦୁଇ ପାଖରେ ଘୁମନ୍ତ ପାହାଡ଼
ପାହାଡ଼ ଖୋଲ ଭିତରେ
ଏଇ ଖେଳଣା ଟ୍ରେନ୍‌ଟି
ଖୁବ୍ ମନ୍ଥର ।

ଆଗରେ ହାତଦେଖାଇ କିଏ
ଅଟକାଉଛି ଟ୍ରେନ୍‌କୁ
ଝରଣା ନା ଛୋଟ ପକ୍ଷୀଟିର ହୁଇସିଲ
ନା ସୂର୍ଯ୍ୟର ଲମ୍ବାହାତ ।
ଆଉ ଟିକିଏ ପରେ ବର୍ଷା ଆସିବ ବୋଲି
ଆଗରୁ ବାଇଣା ଦେଇଗଲାଣି ।
ମୁଁ ସିମଲା ଆସିଲା ପରେ
ବର୍ଷା ମୋ ପଛେ ପଛେ ଆସିଛି
ଏଠାକୁ ।

ମୋ କୋଳରେ 'ପରୀ'
ଏଇ ଟ୍ରୟ ଟ୍ରେନ୍‌ରେ ସେ ଭୁବନେଶ୍ୱର ଯିବ କହୁଛି
ମାତ୍ର ଦୁଇଦିନ ପାଇଁ ।
ପରୀମାନେ କୋଳରେ ବସିଲେ
ଜୀବନ ଅଧିକ ଆନନ୍ଦମୟ ହୋଇଯାଏ ।

ମନେହୁଏ ଆଉ କିଛି ଦର୍କାର ନାହିଁ
ଜୀବନରେ ।
ପରୀର ଛୁଆଦିନ କେଡ଼େ ସୁନ୍ଦର
କେତେ ନିଷ୍ପାପ ଫୁଲପରି ।
ପରୀର କୁନି ଆଖିରେ
ବିସ୍ମୟ ଆଉ ବିସ୍ମୟ ।
ଦୁଇ ପାଖରେ ଏତେ ବଣୁଆ ଫୁଲ
ଏତେ ପକ୍ଷୀମାନଙ୍କର କାକଳୀ ।

ପରୀକୁ ଏବେ ଚାରିବର୍ଷ
ସେପ୍ଟେମ୍ବର ଅଠର ତା ଜନ୍ମଦିନ
ଗଣେଶ ଚତୁର୍ଥୀ ଦିନ ।
ହାତରେ ତା କାଗଜ, ରଙ୍ଗବେରଙ୍ଗ
ପେନ୍‌ସିଲ ।

କେତେ ନା କେତେ ଚିତ୍ର ଆଙ୍କିବ ପରୀ
ପାହାଡ଼ର, ଝରଣାର
ସିମଲାରେ ବସା ବାନ୍ଧିଥିବା
ଖୁଚୁବୁଚୁ ମେଘର ।
କେଉଁଠି ଥାଆନ୍ତି ଏ ମେଘମାନେ ପାପା
ରାତିରେ କେଉଁଠି ଶୁଅନ୍ତି ।
ମେଘମାନେ ପ୍ରଜାପତିମାନେ
ଚଢ଼େଇ ଆଉ ଫୁଲ ସମସ୍ତେ
ଅଛନ୍ତି ଚିତ୍ରରେ
ପରୀର ଡ୍ରଇଂ ଖାତାରେ ।

ବିନ୍ଦୁ ବିନ୍ଦୁ ସ୍ୱପ୍ନ ସବୁକୁ
କିଏ ନେସି ଦେଇଛି ଏଠି
ଗଛମାନଙ୍କ ଦେହରେ ।
ପରୀ ବୁଲିବା ପାଇଁ ଆସିଛି ଆଜି
ସିମଲା ଆଈ ସାଙ୍ଗରେ
ସିବାଲିକ୍‌ରେ ।

•

## ଯେତେକଥା ପଛ ତାରିଖର

ନିକାଞ୍ଚନ ନିକାଞ୍ଚନ ଲାଗୁଛି ଭୀଷଣ
ମେଘ ଆଉ ପାହାଡର ଲୁଚକାଳି ଖେଳ ।
ପାହାଡ଼ି ଫୁଲର ଢେର ରଙ୍ଗବେରଙ୍ଗର
ସେ ପାଖରେ ନୀଳ ବନ କୁଲୁମନାଲିର ।

ମେଘ ଆସି ଫେରିଯାଏ ପାହାଡ଼କୁ ଛୁଇଁ
କେତେବେଳେ ଝରିଯାଏ ଲୁହବୁନ୍ଦା ହୋଇ
ଭାରି ଭଲ ଲାଗୁଛି ସ୍ୱପ୍ନପରି ସୁନ୍ଦର

ସିମଲାର ପାହାଡ଼ି ମେଘର
ହିମାଚଳି ମେଘର ଏ ଅପୂର୍ବ ସମ୍ଭାର ।
ସେପାଖରେ ଶୃଙ୍ଗ ପରେ ଶୃଙ୍ଗ
କୁଲୁମନାଲିର ।

ମେଘ ଆସି ବେଳେବେଳେ
ଓଦାକରି ଦେଇଯାଏ
ଆଖିପତା ମୋର
ମେଘ ମୋତେ ଛୁଇଁଯାଏ
ମୁଁ ତାକୁ ଛୁଇଁପାରେ ନାହିଁ
ମେଘ ବି କନ୍ଦାଏ ମୋତେ
ଲୁହ ସବୁ ଝରିଯାଏ ବିନ୍ଦୁ ବିନ୍ଦୁ ହୋଇ ।
ହିମାଚଳି ମେଘର ଏ ଲୁଚକାଳି ଖେଳ
କି ଅଦ୍ଭୁତ ସମ୍ମୋହନ ପାଇନ୍ ବନର
ସବୁ ମୁଁ ଯାଇଛି ଭୁଲି ଯେତେକଥା ପଞ୍ଚ ତାରିଖର ।

•

## ଏଠି ଏତେ ନୀଳକଣ୍ଠ ପକ୍ଷୀ

ମୁଁ କାନ ଡେରି ବସିଛି କାହିଁ କେତେ ଯୁଗରୁ
ଶୁଣିବି ବୋଲି ନୀଳକଣ୍ଠ ପକ୍ଷୀର ଗୀତ
ଦେଖିବି ବୋଲି ଜହ୍ନରାତିରେ ସ୍ୱପ୍ନପରି ସୁନ୍ଦର
ସେମାନଙ୍କ ଚିତ୍ରିତ ନୀଳ ପରର ଅଦ୍ଭୁତ କାରୁକାର୍ଯ୍ୟ
ମୁଁ କେମିତି ଜାଣିଥାଆନ୍ତି ସେହି
ଦୁର୍ଲଭ ପକ୍ଷୀମାନଙ୍କର ଘର
ଏଇ ନୀଳ ହ୍ରଦ କୂଳରେ ବୋଲି ।

ଏଇ ନୀଳକଣ୍ଠ ପକ୍ଷୀମାନେ ଅଛନ୍ତି ବୋଲି
ପୃଥିବୀରେ ଅଛି ଅସରନ୍ତି ଭଲପାଇବା
ଏମାନେ ଯେତେଦିନ ପର୍ଯ୍ୟନ୍ତ ଥିବେ
ତାହା କେବେ ଶେଷ ହେବନି ସଂସାରରୁ ।

ଏତେ ଭୋର୍‌ରୁ ମୋତେ ଜଗାଇ ଦେଲ ନିଦରୁ
ତମେମାନେ ଗୀତ ଗାଉଥିଲ ନା ଗପ କରୁଥିଲ
ଜାଣିଲା ବେଳକୁ ନୀରବିଗଲା ତମ ସ୍ୱର
ଏଇ ହ୍ରଦକୂଳରେ ତମର ସ୍ୱପ୍ନର ଘର ।
ଆସନ୍ତା ବର୍ଷ ଏଇଦିନେ
ଆସିଲା ବେଳକୁ ଦେଖିବି
ଆହୁରି ସୁନ୍ଦର ହୋଇଯାଇଥିବ
ତମମାନଙ୍କର
ସୁଶୋଭନ ନୀଳପର ।

•

## ମଣିପୁରୀ କବିମାନେ

ଏବେ ସମସ୍ତେ ଏଠି କବି
ସମୟ ଗୀତ ଗାଉଛି କବିତାର
ମଣିପୁରର ମେଘମାନେ
ଏକାଠି ହେଲେଣି କବିତା ଶୁଣିବା ପାଇଁ ।

କବିମାନେ ମାଟି ମଞ୍ଚରେ ଆସୀନ
ଦୁଇ ପାଖରେ ଦୁଇଟି ସତେଜ କଦଳୀ ଗଛ
କଦଳୀ ଗଛରେ
ସୁସଜ୍ଜିତ ଫୁଲମାଳ
ମାଟି ଘଟ, ଆମ୍ବଡାଳ
ପାଖରେ ପ୍ରଜ୍ୱଳିତ ମାଟିଦୀପ
ତେଲ ସରୁ ନାହିଁ ଦୀପରୁ
ଛନ୍ଦ ହଜୁ ନାହିଁ କବିତାରୁ ।

ମଣିପୁରର ପାହାଡ଼, ଗଛବୃଛ
ବଡ଼ ବେଶୀ ଉତ୍ସୁକ
କବିତା ଶୁଣିବା ପାଇଁ ।

ମୈଥିଳୀ କବିତା
ସାନ୍ତାଳୀ କବିତା
ଆସାମୀ କବିତା
ବଙ୍ଗଳା କବିତା
ଓଡ଼ିଆ କବିତା
ସବୁ କବିତାର ସ୍ୱର ଗୋଟିଏ
ଭାରତୀୟ ସ୍ୱର ।

ମଣିପୁରୀ ହୁଅନ୍ତୁ କି ଓଡ଼ିଆ ହୁଅନ୍ତୁ
ସବୁ କବିତାର ସ୍ୱର ଗୋଟିଏ
ସମସ୍ତେ ଭାରତୀୟ
ପ୍ରକୃତି ଭିତରେ କବିତା ପାଠ ।

ଢେର୍ କବିତା ଅଛି ମୋ ପାଖରେ
ସବୁଗୁଡ଼ିକୁ ନେଇଆସିଛି ଉଡ଼ାଜାହାଜରେ
ଗାଁର ବାସ୍ନାକୁ ବି ନେଇ ଆସିଛି
ଶାଢ଼ି ଭିତରେ ଲୁଚାଇ ।

କାଲେ କିଏ କଣ ଭାବିବ
ଏଇ ମଣିପୁରରେ
ଏଠି ଆସି ଦେଖୁଛି
କେବଳ ଗାଁ'ର ବାସ୍ନା ଛଡ଼ା
କିଛି ନାହିଁ ଏଠି ।

ନିଚିପଡ଼ କରି ଲିପା ହୋଇଛି ଗୋବରରେ
ବଡ଼ ପବିତ୍ର ଆନନ୍ଦମୟ ବାତାବରଣ
ଯୋଡ଼ାଶଙ୍ଖର ଶବ୍ଦରେ
ଶବ୍ଦାୟିତ କବିତାର ଘର ।

ମଣିପୁରର କବିମାନେ ତ
ଗାଁର କବି
ସମସ୍ତଙ୍କ କବିତାରେ ଗାଁ'ର ବାସ୍ନା ।

ସରଳ ଗାଁ ଲୋକ
ଭାରି ନିରୀହ, ସ୍ୱାଭିମାନୀ ।
କବିତା ପଢ଼ିବା ପାଇଁ
କାହିଁ କେତେ ଦୂର ଓଡ଼ିଶାରୁ
ଆସିଥିଲି ।

ବାନ୍ଧବୀ ରାଧେଷ୍ଟା ସଙ୍ଗେ
ଦେଖା ହେଲାନାହିଁ
ମୁଁ ଫେରିଯାଉଛି ଅନେକ 'ଦୋଷ' ସହିତ ।
ଭୁଲିଗଲି ଢେର୍‌କଥା ।
ହୁଏତ ଲେଖିଆସିଥାଆନ୍ତି
ଦୁଇ ଧାଡି କଥା ।

ଦେଇ ଥାଆନ୍ତି ତା'ର ସେଇ ପୁରୁଣା ପିଲାଦିନ ଫଟୋ
ଯାହା ଏବେବି ମୋ ଆଲବମ୍
ଭିତରେ ସେମିତି ସାଇତା ହୋଇ ରହିଛି ।
ମଣିପୁର ସତରେ
ମଣିମୁକ୍ତାର ପୁର ।

•

## ଜଲନ୍ଧର ଆକାଶରେ କାର୍ତ୍ତିକର ଜହ୍ନ

ଲୋହିତ ସୂର୍ଯ୍ୟର ଗାଁ
ପଞ୍ଜାବୀ ପଞ୍ଜାବୀ ମନେ ହେଉଥିବା
ଜଲନ୍ଧର ।
ଏପାଖରେ ଅମ୍ବାଲା
ସେପାଖରେ ଲୁଧିଆନା
ତା ପାଖରେ ଜଲନ୍ଧର ।
ସୈନିକର ସ୍ୱପ୍ନ
ଦେଶର ରକ୍ଷାକବଚ
ଏଇ ଜଲନ୍ଧର ।

ଜଳନ୍ଧର ଆକାଶରେ ଆଜି
କାର୍ତ୍ତିକର ଜହ୍ନ ।
ଆଉ ଦୁଇଦିନ ପରେ
କାର୍ତ୍ତିକ ପୂର୍ଣ୍ଣିମା ।
ଆ-କା-ମା-ଭୈର ଭୋର
ଡଙ୍ଗା, ଦୀପର ଆଲୁଅ ।
ନଈ କିମ୍ବା ସମୁଦ୍ର
କୁଆର ।

ହିମାଚଳି କବି, ଚିତ୍ରକର
ଓଡ଼ିଶାର କାରୁକାର୍ଯ୍ୟ ଲୋକଗୀତ
ଶବ୍ଦର ସମ୍ଭାର ।
ଜଳନ୍ଧର ଆକାଶରେ
କାର୍ତ୍ତିକର ଜହ୍ନ
ମନୋମୁଗ୍ଧକର ।

ଅର୍ଦ୍ଧେକ ପୃଥିବୀ
ସମ୍ମାନରେ ସମ୍ମାନିତ
ହେଲା ଏଇ କବି
ଦେଶ ଗଢ଼ିବାର ମନ୍ତ୍ର
ଶିଖିଛି ପଞ୍ଜାବ
ଶିଖ୍ ସନ୍ତାନର ଦେଶ
ଜଳନ୍ଧର ।

ଏଠାକାର ମାଟି ଓ ଆକାଶ
ସୈନିକର ସ୍ୱପ୍ନରେ ରଙ୍ଗିନ
ପଞ୍ଜାବୀ ମାଆମାନେ
ଦୃଢବଦ୍ଧ ଯୁଦ୍ଧ ପାଇଁ
ଦେଶକୁ ରକ୍ଷା କରିବାରେ ।
ଆଜି କାର୍ତ୍ତିକର ଜହ୍ନ
ଏଇ ଜଳନ୍ଧର ଆକାଶରେ ।

•

## ତପସ୍ୱିନୀରେ ରାଞ୍ଚି

ଏଥର ରାଞ୍ଚିଗଲେ ଦେଖିବି
ବର୍ଷାପାଣି ସବୁ
ଫେରିଯାଇଥିବ ନଈକୁ
ପାହାଡ଼ି ନଈର ଛାତି ଭରିଯାଇଥିବ ପାଣିରେ ।

ଲବଙ୍ଗଲତା ଫୁଟିଥିବ କେତେ ନା କେତେ
ବଣୁଆ ଫୁଲର ଗନ୍ଧରେ
ବାସ୍ନାମୟ ହୋଇ ଉଠିଥିବ
ଥାକଥାକ ବନସ୍ତର ବାଟ
ରଙ୍ଗବେରଙ୍ଗ ସଦାବିହାରୀ
ଲବଙ୍ଗଲତା
ସାଙ୍ଗ ହୋଇ ଗପସପ ହେଲା ବେଳେ
ସେତିକିବେଳେ
ମୁଁ ପହଞ୍ଚିବି ରାଞ୍ଚିରେ ।

ସିବାଲିକ୍‌ରେ ସିମଲା ଗଲାବେଳେ
ଏଇ ବଣୁଆ ଫୁଲମାନେ
ମୋତେ ଅପେକ୍ଷା କରି ବସିଥିଲେ ବାଟରେ ।

ମୁଁ ଫେରିଲା ବେଳେ ସନ୍ଧ୍ୟା ହୋଇଯାଇଥିବ
ବଣ ପର୍ବତ ନଈ ବିନିଦ୍ର ଥିବେ
ମୋ ଅପେକ୍ଷାରେ ।

ମୁଁ ପୁଣି ଫେରିବି ଏଇ ବାଟରେ
ତପସ୍ୱିନୀରେ ।

ଏଇ ଜଙ୍ଗଲର ରହସ୍ୟଘେରା ପାହାଡ଼ ଖୋଲରେ
ଅନ୍ଧାରୁଆ କୋଣରେ
ସ୍ମୃତିମୟ ସଞ୍ଜଟିଏ ବସିଛି କାହିଁକି ଏମିତି
ବିଷାଦ ମନରେ ।

ନଈ କିମ୍ବା ପାହାଡ଼ ଦେଖିଲେ
ପିଲାଦିନ ମନେପଡେ
ସୁବର୍ଣ୍ଣରେଖାର ସଞ୍ଜ
ମାଳ ମାଳ ଗେଣ୍ଡାଳିଆ
କୁମ୍ଭାଟୁଆ, ଭଦଭଦଳିଆ
ସ୍ମୃତିର ସୂତାରେ ଗୁନ୍ଥା
ଶଙ୍ଖଚିଲ ଗାଁ
ମୁଁ ଫେରୁଛି ଏଇ ବାଟରେ
ତପସ୍ୱିନୀରେ ।

•

## ଚିତ୍ର ଅଙ୍କା ସରିନାହିଁ

ମୁଁ କହିଲି, ମୁଁ ଶାନ୍ତିନିକେତନରେ ପଢୁଥିଲି
ଅନେକ ବର୍ଷ ଆଗେ ।
ଶାନ୍ତିନିକେତନରେ ଏମିତି ମେଘ ଥିଲା, ବର୍ଷା ବି ଥିଲା
ଏଠି ଯେମିତି ପାହାଡ଼ ଉପରେ ମେଘ ବସା ବାନ୍ଧିଛି
ଏଇ ସିମଲାରେ, ଅବିକଳ ସେମିତି ।
ଏଠି କଥା କୁହା ପାହାଡ
ପାହାଡ଼ ଉପରେ ମେଘ ।
ସାତ ହଜାର ଫୁଟ ଉପରେ
ଝିରି ଝିରି ସ୍ୱପ୍ନ ପରି ମେଘ
ଝିରି ଝିରି ସ୍ମୃତି ପରି ମେଘ
ଭାରି ସୁନ୍ଦର ।
ଗବେଷଣାର ଘର
ଏଡ୍‌ଭାନସ୍ ସେଣ୍ଟର ।
ଏଠିକାର ଲାଇବ୍ରେରୀ
କେତେକେତେ ବହିର ପାହାଡ଼
ଟାଗୋର, ନେହେରୁ, ଗାନ୍ଧି

ସମସ୍ତଙ୍କ ତୈଳଚିତ୍ର
ଅନବଦ୍ୟ ସୁନ୍ଦର ।
ଗବେଷଣା ସରିନାହିଁ
ଢେର୍ ଡେରି ଅଛି ସରିବାକୁ ।
ମୁଁ କେମିତି ଯିବି ଏଇ ସିମଲାରୁ
ସମର ହିଲ୍‌ରୁ, ରାଷ୍ଟ୍ରପତି ନିବାସରୁ ।
ଆଉ କିଛିଦିନ
ମେଘ ସହ ରହିବାକୁ ହେବ ମୋତେ ।
ଆଉ କିଛିଦିନ
ପାହାଡୀ ଫୁଲଙ୍କ ମେଳରେ
ମନଖୋଲା ଗୀତ ଗାଇବାକୁ ହେବ ମୋତେ ।
ଭୁଲି ଯାଇଥିବା କବିତାମାନଙ୍କୁ
ଏକାଠି କରି
ଆଉଥରେ ପାଣ୍ଡୁଲିପି ଲେଖିବାକୁ ହେବ ମୋତେ ।
କୁଲୁମନାଲିର କୋହଲା ପବନ
ମେଘ ତା ଡେଣାରେ ଉଡେଇ ଆଣିଛି ସିମଲାକୁ ।
ସିମଲାର ମେଘମାନଙ୍କୁ
ଚିତ୍ରରେ ସଜାଡ଼ି ଦେଇଛି ପରୀ
ପାହାଡ଼ମାନଙ୍କୁ ବି
ଡ୍ରଇଂ ଖାତାରେ ବସାଇ ସାରିଛି
କାଲିଠାରୁ ।
ଝରଣା ଫୁଲ ଆଉ ପ୍ରଜାପତିମାନେ
ଘୁରଘୁର୍ ହେଉଛନ୍ତି ପରୀ ପାଖରେ
ଡ୍ରଇଂ ଖାତା ଭିତରେ ରହିବା ପାଇଁ
ମୋ କବିତା ଲେଖା ସରିନାହିଁ
ପରୀର ଚିତ୍ର ଅଙ୍କା ସରିନାହିଁ ।
ତଥାପି ଆମକୁ ଫେରିବାକୁ ହେବ ଘରକୁ
ଆଜି ସକାଳେ ସିବାଲିକ୍ ଟ୍ରୟ ଟ୍ରେନ୍‌ରେ ।

## ଘର (୭)

କେତେ କଷ୍ଟରେ ଘର ଖଣ୍ଡିଏ କରିଥିଲି
ଥିଲା ତୁଳସୀ ଚଉରା ଡାହାଣ ପାଖରେ
ଘରର ମୁହଁ ଥିଲା ପୂର୍ବକୁ
ସମସ୍ତେ କହିଲେ
ପୂର୍ବମୁହାଁ ଘର ଭାରି ଶୁଭ ।

ଆମ ଦୁହିଁଙ୍କର କଷ୍ଟଲବ୍ଧ ଟଙ୍କା
ଖର୍ଚ୍ଚ ହୋଇଥିଲା ସେ ଘରେ
ଘରଟି ସତରେ
ଆମର ସ୍ୱପ୍ନର ଘର ଥିଲା
ବାଛିବାଛି ଫୁଲଗଛ ସବୁ
ପୋତିଥିଲୁ ବଗିଚାରେ ।

ଫୁଲର ନାଁ ଥିଲା ସୁଗନ୍ଧରାଜ, ଗଙ୍ଗଶିଉଳି,
କଞ୍ଚନ, ଚମ୍ପା ଆଉ ମାଳତୀ ।

ଗଙ୍ଗଶିଉଳି ଫୁଟି ଝରିପଡିଲା ଭୂଇଁରେ
ପିଲାମାନେ ଆସିଲେ
ଫୁଲ ତୋଳିବାକୁ ।

ମୁଁ କହିଲି, ମନ ଇଚ୍ଛା ଫୁଲ ମୋ ବଗିଚାରୁ
ନେଇଯାଅ
ତମେମାନେ ତ ଜଣେ ଜଣେ ସୁଗନ୍ଧିତ
ଫୁଲ ପରି ସୁନ୍ଦର ।

ଘରର ଗୋଟିଏ ନାଁ ଥିଲା
ଭାରି ସୁନ୍ଦର ସେ ନାଁ ପ୍ରୀତମପୁରୀ ।

ଇନ୍ଦ୍ରଧନୁ ରଙ୍ଗରେ
ରଙ୍ଗିନ ହୋଇଯାଉଥିଲା ଘରର ଆକାଶ ।

କଞ୍ଚନ ଏବଂ କଦମ୍ବ, ବଉଳ
ଢ଼ାଙ୍କି ରଖିଥିଲା ଘରକୁ କାଳେ
କାହାର ନଜର ଲାଗିଯିବ ।

ଏଇ ଘର ପାଇଁ
ଆମର ବୟସ
ଆମର ଅର୍ଥ
ଆମର ସମୟ
ସବୁକୁ ବାଜି ଲଗାଇ ଦେଲୁ ସେଦିନ ।

ଏଇ ଘରେ ଆମେ ପରସ୍ପରର ଫେରିବା
ବାଟକୁ ଚାହିଁ ବସୁଥିଲୁ ।

ବନ୍ଧୁବାନ୍ଧବମାନଙ୍କୁ
ସଙ୍ଖୁଳିଲୁ ଖୁସିରେ ।

ଗୋଟିଏ ଘର ପାଇଁ
କେତେ କଣ ନ କଲୁ
ତମାମ୍ ଜୀବନ ।

ସେମାନେ ବୁଝିଲେନି
ବୁଝିବାକୁ ଚାହିଁଲେନି
ଘରକୁ ଫେରି ଚାହିଁଲେନି
ଭଡ଼ାଘରକୁ କଲେ ନିଜ ଘର ।

ଭଡ଼ାଘରେ ଠାକୁର ପୂଜା କଲାବେଳେ
ନିଜ ଘର କଣ ମନେ ପଡୁନଥିବ ?

•